# କବି ବଳରାମ ଦାସ

ଡକ୍ଟର କୃଷ୍ଣଚରଣ ସାହୁ



ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର

କବି ବଳରାମ ଦାସ


ଲେଖକ :
**ଡକ୍ଟର କୃଷ୍ଣଚରଣ ସାହୁ**



ପ୍ରକାଶକ :
ଓଡ଼ିଶା ସାହିତ୍ୟ ଏକାଡେମୀ, ସଂସ୍କୃତି ଭବନ
ଭୁବନେଶ୍ୱର-୭୫୧୦୧୪

ମୁଦ୍ରଣ : ଇଙ୍କ ଓଡ଼ିଶା
୧୧୫ ପି. ଆଚାର୍ଯ୍ୟ ବିହାର, ଭୁବନେଶ୍ୱର

ପ୍ରଥମ ପ୍ରକାଶ : ୧୯୮୮
ଦ୍ୱିତୀୟ ପ୍ରକାଶ : ୨୦୦୮

ମୂଲ୍ୟ :ଟ୯୫.୦୦
(ପଞ୍ଚାନବେ ଟଙ୍କା ମାତ୍ର)


**KAVI BALARAMA DAS**


*Written by*
**Dr. Krushna Charan Sahoo**



*Published by*
**Orissa Sahitya Akademi**
Sanskruti Bhawan,
Bhubaneswar-751014

*Printed at*
**Ink Odisha**
115-P, Acharya Vihar, BBSR

First Edition : 1988
Second Edition-2008
Price :Rs.95.00
(Rupees Ninty five only)

ISBN : 81-7586-169-X

# ଦ୍ୱିତୀୟ ସଂସ୍କରଣ ସଂପର୍କରେ

ପଞ୍ଚସଖାମାନଙ୍କ ମଧ୍ୟରୁ ଜ୍ୟେଷ୍ଠ ସଖା ଭକ୍ତକବି ବଳରାମ ଦାସ ଓଡ଼ିଶାରେ ଭକ୍ତି ଆନ୍ଦୋଳନର ଅନନ୍ୟ ପ୍ରବକ୍ତା ଭାବରେ ପ୍ରସିଦ୍ଧି ଲାଭ କରିଥିଲେ । ଶ୍ରୀ ଜଗନ୍ନାଥଙ୍କ ଅପାର କୃପାରୁ ସେ ସାରସ୍ୱତ ସାଧନାରେ ବ୍ରତୀରହି ଅନେକ କାଳଜୟୀ ରଚନାମାନ ସୃଷ୍ଟିକରି ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିଯାଇଛନ୍ତି । ସେ ଏକଧାରରେ ଥିଲେ ଜଣେ କବି, ସାଧକ, ଭକ୍ତ ଓ ଦାର୍ଶନିକ । ତାଙ୍କ ଲେଖନୀରୁ ଜଗମୋହନ ରାମାୟଣ, ଲକ୍ଷ୍ମୀପୁରାଣ, ବ୍ରହ୍ମାଣ୍ଡ ଭୂଗୋଳ, ଭାବସମୁଦ୍ର, ବଟ ଅବକାଶ, ବେଦାନ୍ତସାର ଗୁପ୍ତଗୀତା, ଉଦ୍ଧବ ଗୀତା ଆଦି ନିସୃତ ହୋଇ ଓଡ଼ିଆରେ ଅତ୍ୟନ୍ତ ଲୋକପ୍ରିୟତା ହାସଲ କରିପାରିଛି । ଦାଣ୍ଡିବୃତ୍ତରେ ରଚିତ କବିଙ୍କ 'ଜଗମୋହନ ରାମାୟଣ' ତାଙ୍କର ସର୍ବଶ୍ରେଷ୍ଠ ମୌଳିକ କୃତିଭାବରେ ଖ୍ୟାତି ଲାଭ କରିଛି । ସେହିପରି ଓଡ଼ିଶାର ପୁରପଲ୍ଲୀରେ 'ଲକ୍ଷ୍ମୀପୁରାଣ' ଗ୍ରନ୍ଥଟି ସର୍ବଜନାଦୃତ ଧାର୍ମିକ ଗ୍ରନ୍ଥ ଭାବରେ ଆଦୃତ । ସିଦ୍ଧସାଧକ ବଳରାମ ଜଣେ ସମାଜ ସଂସ୍କାରକ ଭାବରେ ଲେଖନୀ ଚାଳନା କରି ସମାଜରୁ କୁସଂସ୍କାର ଦୂର କରିବାକୁ ପ୍ରୟାସୀ ହୋଇଥିଲେ । ଅତି ସରଳ ବୋଧଗମ୍ୟ ଲୌକିକ ଭାଷାରେ ଜୀବନ୍ତ ଭାବେ ଦର୍ଶନକୁ ପ୍ରତିପାଦିତ କରି ସେ ଓଡ଼ିଆ ସାହିତ୍ୟକୁ ପୁଷ୍ଟଳ କରିଯାଇଛନ୍ତି ।

ଏହିଭଳି ଜଣେ ନିଷ୍ଠାପର ସାରସ୍ୱତ ସାଧକ ଭକ୍ତ କବି ବଳରାମ ଦାସଙ୍କ ଜୀବନୀ ଓ ପ୍ରତିଭା ସଂପର୍କରେ ଏକ କ୍ଷୁଦ୍ର ପୁସ୍ତିକା ୧୯୮୮ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ପ୍ରକାଶ କରାଯାଇଥିଲା । ଓଡ଼ିଆ ସାହିତ୍ୟର ପ୍ରାଚୀନ ଯୁଗ ସଂପର୍କରେ ଗବେଷଣା କରି ସିଦ୍ଧିଲାଭ କରିଥିବା ବରିଷ୍ଠ ଅଧ୍ୟାପକ ଡକ୍‌ଟର କୃଷ୍ଣଚରଣ ସାହୁ ଉକ୍ତ ଗ୍ରନ୍ଥଟି ରଚନା

କରି ସେ ସମୟର ସାହିତ୍ୟକୁ ଯେଉଁଭଳି ଭାବରେ ଆମମାନଙ୍କ ସମ୍ମୁଖରେ ଉପସ୍ଥାପନ କରିଛନ୍ତି, ସେଥିପାଇଁ ସେ ଧନ୍ୟବାଦାର୍ହ । ଓଡ଼ିଆ କାବ୍ୟ ସାହିତ୍ୟର ଜଣେ ପ୍ରଥିତଯଶା ସିଦ୍ଧସାଧକ ଭକ୍ତ କବି ବଳରାମଙ୍କ ଜୀବନୀ, ସାରସ୍ୱତ ସାଧନା ଓ ଦର୍ଶନକୁ ଅତ୍ୟନ୍ତ ପ୍ରାଞ୍ଜଳଭାବରେ ଏହି ଗ୍ରନ୍ଥରେ ଗ୍ରନ୍ଥାକାର ପୃଷ୍ଠାୟିତ କରିଥିବାରୁ ଉକ୍ତ 'କବି ବଳରାମ ଦାସ' ଗ୍ରନ୍ଥଟିର ଆବଶ୍ୟକତା ସବୁ କାଳରେ ରହିବ । ଉକ୍ତ ଆବଶ୍ୟକତାକୁ ପୂରଣ କରିବାକୁ ଓଡ଼ିଶା ସାହିତ୍ୟ ଏକାଡେମୀ କର୍ତ୍ତୃପକ୍ଷ ନିଷ୍ପତ୍ତି ନେଇ ଏହି ଗ୍ରନ୍ଥଟିର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିବାକୁ ଯାଉଛନ୍ତି ।

ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରତିଷ୍ଠାର ପଚାଶ ବର୍ଷ ପୂର୍ତ୍ତି ସୁବର୍ଣ୍ଣ ଜୟନ୍ତୀ ପାଳନ ଅବକାଶରେ ଏହି ପୁସ୍ତିକା 'ବଳରାମ ଦାସ'ର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଉଥିବା ଅତ୍ୟନ୍ତ ଆନନ୍ଦର ବିଷୟ । ଉକ୍ତ ପୁସ୍ତିକାଟି ଭକ୍ତକବି ବଳରାମ ଦାସଙ୍କ ଜୀବନୀ ଓ ପ୍ରତିଭା ସଂପର୍କରେ ଅବଗତି କରାଇବା ସଂଗେ ସଂଗେ ଆଗାମୀ ପିଢ଼ିର ଲେଖକମାନଙ୍କୁ ପ୍ରେରଣା ଯୋଗାଇବା ସଂଗେ ସଂଗେ ସେହି ମହାନ୍ କବିଙ୍କ କାବ୍ୟାଦର୍ଶରେ ଅନୁପ୍ରାଣିତ ହେବା ପାଇଁ ଉତ୍ସାହିତ କରିବ, ଏଥିରେ ସନ୍ଦେହ ନାହିଁ । ଷୋଡଶ ଶତାବ୍ଦୀରେ ଓଡ଼ିଶାର ଭାଷା, ସାହିତ୍ୟ ଓ ସଂସ୍କୃତିର ସ୍ଥିତି ସଂପର୍କରେ ଆକଳନ କରିବାରେ ଏହି ପୁସ୍ତକଟି ସମର୍ଥ ହୋଇଥିବାରୁ ପାଠକ ପାଠିକାମାନଙ୍କ ଦ୍ୱାରା ଏହା ସମାଦୃତ ହେବ ବୋଲି ଆଶା କରୁଛି ।

ଡକ୍ଟର ହରପ୍ରସାଦ ପରିଚ୍ଛାପଟ୍ଟନାୟକ
ସଚିବ

ଭୁବନେଶ୍ୱର
ରଥଯାତ୍ରା, ୨୦୦୮

# ଅଗ୍ରଲେଖ

ଓଡ଼ିଆ ସାହିତ୍ୟର ଆଦିକାଳରୁ ଏପର୍ଯ୍ୟନ୍ତ ଯେଉଁ ବିଶିଷ୍ଟ ବରେଣ୍ୟ ସାହିତ୍ୟ ସାଧକମାନଙ୍କ ଅବଦାନରେ ଓଡ଼ିଆ ସାହିତ୍ୟ ଆଜି ଏତେ ଋଦ୍ଧିମନ୍ତ ହୋଇ ପାରିଛି ସେହିମାନଙ୍କ ଜୀବନୀ ଓ କୃତିଗୁଡ଼ିକୁ ସମ୍ବଳ କରି କେତେକ କ୍ଷୁଦ୍ରପୁସ୍ତକ (ମନୋଗ୍ରାଫ) ପ୍ରକାଶ କରିବାପାଇଁ ଏକାଡ଼େମୀ ଯୋଜନା କରିଛନ୍ତି । ଅନ୍ୟାନ୍ୟ ରାଜ୍ୟ ଏକାଡେମୀ ତରଫରୁ ମଧ୍ୟ ଏହିଭଳି କାର୍ଯ୍ୟକ୍ରମ ବହୁ ଆଗରୁ ଗ୍ରହଣ କରାଯାଇଛି । କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଇଂରାଜୀ ଭାଷାରେ ଭାରତର ଯୁଗସ୍ରଷ୍ଟା କବି-ଲେଖକମାନଙ୍କ ସମ୍ପର୍କରେ ଏହି ଭଳି କ୍ଷୁଦ୍ରପୁସ୍ତକମାନ ପ୍ରତିବର୍ଷ ପ୍ରକାଶ କରୁଛନ୍ତି ।

ଲକ୍ଷ୍ୟ କରାଯାଇଛି ଯେ ଓଡ଼ିଆ ଭାଷା ଓ ସାହିତ୍ୟ ଅଧ୍ୟୟନ କରୁଥିବା ଛାତ୍ରଛାତ୍ରୀମାନଙ୍କୁ ଏବଂ ଅଧ୍ୟାପକ ଓ ଅଧ୍ୟାପିକାମାନଙ୍କୁ ଛାଡ଼ି ଦେଲେ ଆମର ଜନସାଧାରଣ ଆମର ସାରସ୍ୱତ ସାଧକମାନଙ୍କ ସମ୍ପର୍କରେ ବିଶେଷ କିଛି ଜାଣନ୍ତି ନାହିଁ । ସେମାନଙ୍କ ଅବଗତି ଲାଗି ମଧ୍ୟ ପୁସ୍ତକ-ପ୍ରକାଶକମାନଙ୍କ ତରଫରୁ ସେପରି କିଛି ସବିଶେଷ ଉଲ୍ଲେଖଯୋଗ୍ୟ ଉଦ୍ୟମ ଆରମ୍ଭ କରାଯାଇ ନାହିଁ । ଏହା ଫଳରେ ଆମର ଜନସାଧାରଣଙ୍କ ପାଖରେ ଆମେ ଆମର ସାହିତ୍ୟିକମାନଙ୍କୁ ଆଦୃତ କରାଇପାରି ନାହୁଁ ଏବଂ ସେହି କାରଣରୁ ମଧ୍ୟ ସେମାନେ ଆମର ଏତେ ବଡ଼ ସମୃଦ୍ଧ ସାହିତ୍ୟ ପ୍ରତି ଯେତିକି ଆକୃଷ୍ଟ ହେବା କଥା ତାହା ହୋଇପାରି ନାହାଁନ୍ତି । ପ୍ରାଚୀନକାଳରୁ ଆଜି ପର୍ଯ୍ୟନ୍ତ ଯେଉଁ ବିଶିଷ୍ଟ ଓଡ଼ିଆ ସାହିତ୍ୟ-ସାଧକମାନେ ଅପରୂପ ଭାବଚିନ୍ତା ଓ ଭାଷାଶୈଳୀସମ୍ବଳିତ ଅମୂଲ୍ୟ ରଚନାମାନ ସୃଷ୍ଟିକରି ଯାଇଛନ୍ତି ସେମାନଙ୍କର ଜୀବନ ମଧ୍ୟ ସେହିଭଳି ଅସାଧାରଣ ଘଟଣା, ବ୍ୟବହାର ଓ ଅଭିଜ୍ଞତାରେ ପରିପୂର୍ଣ୍ଣ । ବିଶିଷ୍ଟ କବି ଓ ଲେଖକମାନେ ସର୍ବସାଧାରଣଙ୍କ ଭଳି କେବଳ

ବଞ୍ଚନ୍ତି ନାହିଁ; ସେମାନଙ୍କ ଜୀବନ ନାନା ବିଚିତ୍ର ଅଭିଜ୍ଞତାରେ ପରିପୂର୍ଣ୍ଣ । ସେମାନେ ଜୀବନର ଅର୍ଥ ଖୋଜି ଆସିଛନ୍ତି, ରସ ଖୋଜି ଆସିଛନ୍ତି ଓ ଜୀବନର ଲକ୍ଷ୍ୟ ମଧ ଖୋଜି ଆସିଛନ୍ତି । ଏଥିରେ ସନ୍ଦେହ ନାହିଁ ଯେ, ଆମର ଅମର ସାହିତ୍ୟିକମାନଙ୍କ ଜୀବନଚର୍ଯ୍ୟା ଭିତରୁହିଁ ସେମାନଙ୍କ ଜୀବନ-ବେଦ ଓ ଜୀବନ-ସଂଗୀତ ଉଚ୍ଚାରିତ ହୋଇଅଛି । ଦୁଃଖର କଥା, ଆମର ଆଦିକବି ସାରଳାଦାସଙ୍କଠାରୁ ଆଜି ପର୍ଯ୍ୟନ୍ତ ବିଶିଷ୍ଟ କବି-ଲେଖକମାନଙ୍କ ଯଥାଯଥ ଅନୁଶୀଳନ କରି ଜୀବନୀ-ଗ୍ରନ୍ଥମାନ ପ୍ରଣୟନ ହୋଇପାରି ନାହିଁ । ପ୍ରତ୍ୟେକ ଲେଖକଙ୍କର ଜୀବନୀ ଭିତରୁହିଁ ତାଙ୍କ ସାହିତ୍ୟର ମୂଳଉତ୍ସକୁ ସଂଧାନ କରିବାକୁ ହେବ ଏବଂ ପ୍ରତି ଲେଖକଙ୍କର ସାହିତ୍ୟ ଭିତରୁହିଁ ତାଙ୍କ ଜୀବନର ଅର୍ଥ, ରସ ଓ ଲକ୍ଷ୍ୟ ଖୋଜିବାକୁ ପଡ଼ିବ । ଏତେକ ଜାଣିଲେ ଗୋଟିଏ ଜାତିର ସାହିତ୍ୟିକ-ଜ୍ଞାନ ଓ ଅଭିଜ୍ଞତା ଅପୂର୍ଣ୍ଣ ରହିବାକୁ ବାଧ । ଏହି ଦୃଷ୍ଟିରୁ ଏକାଡେମୀ ପ୍ରତିବର୍ଷ ନିର୍ଦ୍ଦିଷ୍ଟ ସଂଖ୍ୟାରେ ଏହି ଭଳି ସ୍ୱଳ୍ପମୂଲ୍ୟ କ୍ଷୁଦ୍ର ପୁସ୍ତକମାନ ସଂକଳନ କରାଇ ପ୍ରକାଶ କରିବାପାଇଁ ଯୋଜନା କରିଛନ୍ତି । ଆଶାକରେ, ଏହି ପୁସ୍ତକଟି ସୁଧୀ ପାଠକ-ପାଠୀକାମାନଙ୍କ ଦ୍ୱାରା ଆଦୃତ ହେବ ଏବଂ ପାଠକ ସାଧାରଣ ଏହି ପୁସ୍ତକ ପାଠକରି ଯଥାସମ୍ଭବ ଉପକୃତ ହେବେ ।

ସୁନିଆଁ
୨୩/୯/୮୮

ମହାପାତ୍ର ନୀଳମଣି ସାହୁ
ସଭାପତି
ଓଡ଼ିଶା ସାହିତ୍ୟ ଏକାଡେମୀ

# ପ୍ରକାଶନ ପ୍ରସଙ୍ଗରେ ପଦେ

ଷୋଡ଼ଶ ଶତାବ୍ଦୀର ଭକ୍ତି-ଆନ୍ଦୋଳନର ପୁରୋଭାଗରେ ଥିବା ପଞ୍ଚସଖାଙ୍କ ମଧ୍ୟରେ ବୟୋଜ୍ୟେଷ୍ଠ ପ୍ରବକ୍ତା, ସାଧକ-ଭକ୍ତ ବଳରାମ ଦାସ ଥିଲେ ଅନ୍ୟତମ । ଶ୍ରୀଜଗନ୍ନାଥଙ୍କ କୃପାରୁ ସେ ଅନନ୍ୟ କବି ପ୍ରତିଭାର ଅଧିକାରୀ ହୋଇ ପାରିଥିଲେ ବୋଲି ତାଙ୍କର ରଚନାଗୁଡ଼ିକରେ ସେ ସ୍ୱୀକାର କରିଛନ୍ତି । ତତ୍‌କାଳୀନ ବିଦ୍ୱନ୍ମଣ୍ଡଳୀରେ ତାଙ୍କର ସାଧନା ଓ ପାଣ୍ଡିତ୍ୟର ପରାକାଷ୍ଠା ଓ ପ୍ରତିଷ୍ଠା ସଂପର୍କରେ ବହୁ ତଥ୍ୟ ବୈଷ୍ଣବ ଗ୍ରନ୍ଥମାନଙ୍କରେ ଉଲ୍ଲିଖିତ ହୋଇଅଛି । ଶ୍ରୀଜଗନ୍ନାଥଙ୍କର ଏକ ନିଷ୍ଠାପର ସେବକ ଭାବରେ ସେ ନିଜର ପରିଚୟ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଭାଷା ଓ ସାହିତ୍ୟର ସେବାରେ ନିଜକୁ ନିୟୋଜିତ କରିଥିଲେ । ଫଳରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଅବକ୍ଷୟ କାଳରେ ତାଙ୍କର ଅମର ଲେଖନୀରୁ ନିଃସୃତ ହୋଇଥିଲା ପ୍ରାଚୀନ ପରଂପରାପୁଷ୍ଟ ଆଧ୍ୟାତ୍ମିକ ଚିନ୍ତାଧାରା-ସମନ୍ୱିତ ଅଜସ୍ର ରଚନା, ଯାହା କି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ ଓ ପୃଷ୍ଟଳ କରିଅଛି । ତାଙ୍କ ରଚିତ ଜଗମୋହନ ରାମାୟଣ, ଲକ୍ଷ୍ମୀପୁରାଣ, ବ୍ରହ୍ମାଣ୍ଡଭୂଗୋଳ, ବଟ ଅବକାଶ, ଭାବସମୁଦ୍ର, ବେଦାନ୍ତସାର ଗୁପ୍ତଗୀତା, ବିରାଟଗୀତା ପ୍ରଭୃତି ସୃଷ୍ଟି ମଧ୍ୟରେ 'ଜଗମୋହନ ରାମାୟଣ' କବିଙ୍କର ସର୍ବଶ୍ରେଷ୍ଠ କୃତି । ତାଙ୍କ ସମୟରେ ପ୍ରଚଳିତ ଲୋକାଚାର ଓ ସାମାଜିକ ଜୀବନଧାରାକୁ ସେ ଅତି ସରଳ ଓ ବୋଧଗମ୍ୟ ଲୌକିକ ଭାଷାରେ ଜୀବନ୍ତଭାବେ ଚିତ୍ରଣକରି ଓଡ଼ିଆ ଭାଷାର ସୁରକ୍ଷା ଓ ପୁଷ୍ଟିସାଧନ କରିଥିଲେ। 'ତାଙ୍କ ରଚିତ ସଂସ୍କାରଧର୍ମୀ 'ଲକ୍ଷ୍ମୀପୁରାଣ' କେତେ ଯେ ହୃଦୟଗ୍ରାହୀ ଓ ଲୋକପ୍ରିୟ ହୋଇ ପାରିଛି ଏବଂ ଉତ୍କଳୀୟ ଧାର୍ମିକ ଓ ସାଂସ୍କୃତିକ ଜୀବନଧାରାକୁ କିପରି ଗଭୀର ଭାବରେ ପ୍ରଭାବିତ କରିପାରିଛି ତାହା ପ୍ରତ୍ୟେକ ଓଡ଼ିଆଠାରେ ସୁବିଦିତ । ଓଡ଼ିଆ କାବ୍ୟ-

ସାହିତ୍ୟର ସେହି ନିଷ୍ଠାପର ବାଣୀ-ସାଧକ କବି ବଳରାମ ଦାସ ଆମର ସର୍ବଥା ସ୍ମରଣୀୟ ଓ ବନ୍ଦନୀୟ ।

ଓଡ଼ିଆ ସାହିତ୍ରର ବିଶିଷ୍ଟ ସାହିତ୍ୟିକ କବି ଲେଖକମାନଙ୍କର ଜୀବନୀ ଓ କୃତିସମ୍ବଳ କ୍ଷୁଦ୍ରପୁସ୍ତକ (ମନୋଗ୍ରାଫ୍) ପ୍ରଣୟନ ଓ ପ୍ରକାଶନ ଓଡ଼ିଶା ସାହିତ୍ୟ ଏକାଡେମୀର ଏକ ବିଶିଷ୍ଟ କାର୍ଯ୍ୟକ୍ରମ । 'କବି ବଳରାମ ଦାସ' ଶୀର୍ଷକ ମନୋଗ୍ରାଫ୍‌ଟି ସେହି କାର୍ଯ୍ୟକ୍ରମରେ ଅନ୍ତର୍ଗତ ହୋଇ ଏବେ ପ୍ରକାଶିତ ହେବାକୁ ଯାଉଛି । ପୁସ୍ତକର ପ୍ରକାଶ ଅବକାଶରେ ଏହାର ରଚୟିତା ପ୍ରାବନ୍ଧିକ ଓ ସୁସମାଲୋଚକ ଡକ୍‌ଟର କୃଷ୍ଣଚରଣ ସାହୁଙ୍କୁ ମୁଁ ସାଧୁବାଦ ଅର୍ପଣ କରୁଛି । ପୁସ୍ତକଟି ସହୃଦୟ ପାଠକ-ପାଠିକାମାନଙ୍କର ଆଦରଣୀୟ ହେବ ବୋଲି ମୋର ଆଶା ଓ ବିଶ୍ୱାସ ।

**ସୁରେନ୍ଦ୍ରନାଥ ଶତପଥୀ**
ସଂପାଦକ
ଓଡ଼ିଶା ସାହିତ୍ୟ ଏକାଡେମୀ

ତା ୨୬।୯।୮୮

# ସୂଚୀପତ୍ର





# ପୃଷ୍ଠଭୂମି

ଷୋଡ଼ଶ ଶତାବ୍ଦୀ ଓଡ଼ିଶା ଶିକ୍ଷା, ସାହିତ୍ୟ, ସଂସ୍କୃତି, ସଭ୍ୟତା ଓ ସମାଜ ପାଇଁ ଏକ ଆହ୍ୱାନର ଯୁଗ ଥିଲା । ଜାତିର ଇତିହାସରୁ ମିଳୁଥିବା ପ୍ରମାଣ ଅନୁଯାୟୀ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ବା ତୃତୀୟ ଶତାବ୍ଦୀ ବେଳକୁ ଭାରତର ଜାତି-ମାନଚିତ୍ରରେ ଓଡ୍ର ଜାତିର ସ୍ପଷ୍ଟ ରୂପରେଖ ପ୍ରତିଷ୍ଠିତ ହୋଇସାରିଥିଲା । ଭରତ ମୁନିଙ୍କ ସଦୃଶ ଶାସ୍ତ୍ରବିଦ୍ ପଣ୍ଡିତ ଓଡ୍ର ବିଭାଷାର ସ୍ୱାତନ୍ତ୍ର୍ୟ ସ୍ୱୀକାର କରିବାକୁ ଆରମ୍ଭ କରିଥିଲେ । ଖାରବେଳ ଓ ଅଶୋକଙ୍କ ପରି ଦିଗ୍‌ବିଜୟୀ ସମ୍ରାଟ ସଂସ୍କୃତ ପରିବର୍ତ୍ତେ ପାଳିଭାଷାରେ ଅନୁଶାସନ ଖୋଦନ କରି ପ୍ରକାରାନ୍ତରେ ଓଡ୍ର ବିଭାଷାକୁ ସମର୍ଥନ ଜଣାଇଥିଲେ । ନବମ ଓ ଦଶମ ଶତାବ୍ଦୀ ବେଳକୁ ଓଡ଼ିଆ ଭାଷାର ସ୍ପଷ୍ଟ ରୂପ ପ୍ରକଟିତ ହୋଇଥିଲା । ଏହି ଶତାବ୍ଦୀରେ ପ୍ରଦତ୍ତ ଶିଳାଲେଖ ସବୁରୁ ଜଣାଯାଏ ଯେ ଓଡ଼ିଆ ଭାଷା ପ୍ରାକୃତ ଭାଷା କବଳରୁ ନିଜକୁ ମୁକ୍ତ କରିବାରେ ସମର୍ଥ ହୋଇଥିଲା । ତ୍ରୟୋଦଶ ଶତାବ୍ଦୀ ବେଳକୁ ଓଡ଼ିଆ ଭାଷା ନିଜର ଶକ୍ତି ଓ ସାମର୍ଥ୍ୟରେ ବିଶ୍ୱାସ ରଖି ନିଜ ଗୋଡ଼ରେ ଠିଆହୋଇ ଚାଲିବାକୁ ଆରମ୍ଭ କରିଥିଲା । କିନ୍ତୁ କାବ୍ୟ ଓ କବିତାର ସୃଷ୍ଟି ପାଇଁ ବୋଧହୁଏ ସେତେବେଳେ ବି ଶକ୍ତି ଆସିନଥିଲା । ଢ଼ଗଢ଼ମାଳି, ନୀତିବଚନ ମହାପୁରୁଷମାନଙ୍କର ଆଜ୍ଞା ଓ ବାଣୀ ପରି କ୍ଷୁଦ୍ର କ୍ଷୁଦ୍ର ରଚନା ବ୍ୟତୀତ ବୃହଦାକାର ଗ୍ରନ୍ଥ ରଚନା କରିବା ପାଇଁ ହୁଏତ ସେତେବେଳେ ବି ସମ୍ଭବ ହୋଇନଥିଲା । ଓଡ଼ିଆ ଲିପି ମଧ୍ୟ ଆଧୁନିକ ରୂପ ଧାରଣ କଲା ତ୍ରୟୋଦଶ ଶତାବ୍ଦୀ ପରେ । ଏହିସବୁ ଅସୁବିଧା ହେତୁ ପଞ୍ଚଦଶ ଶତାବ୍ଦୀ ହିଁ ହେଲା ଓଡ଼ିଆ ସାହିତ୍ୟର ଆରମ୍ଭ କାଳ । କିନ୍ତୁ ମହାକବି ସାରଳା ଦାସ ଯେଉଁ ତିନୋଟି ଗ୍ରନ୍ଥ ରଚନା କଲେ, ସେସବୁ ଆକାରରେ ଏତେ ବିଶାଳ ଥିଲା ଯେ, ସେସବୁ ମଧ୍ୟରେ ଓଡ଼ିଆ ଭାଷା ଓ ସାହିତ୍ୟର ବିଗତ ପାଞ୍ଚଶହ ବର୍ଷର ଇତିହାସ ଅନ୍ତର୍ଭୁକ୍ତ ହୋଇଗଲା । ସେହି ମହାକବି ଓଡ଼ିଆ ସାହିତ୍ୟକୁ ଏକ ସୁଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ କରିଦେଲେ । କିନ୍ତୁ ସେ ଲେଖିଥିଲେ କେବଳ ପୁରାଣ ଓ ବୋଧହୁଏ ଏକ ବଚନିକା । ଓଡ଼ିଆ ସାହିତ୍ୟକୁ ଆଙ୍ଗିକ ବୈଚିତ୍ର୍ୟରେ ସୁଷମାମଣ୍ଡିତ କରିବାର ଦାୟିତ୍ୱ ପଡ଼ିଲା ଷୋଡ଼ଶ ଶତାବ୍ଦୀର କବିମାନଙ୍କ ଉପରେ ।

ପ୍ରଜାମାନଙ୍କ ପାଇଁ ଉଦ୍ଦିଷ୍ଟ ଶିଳାଲେଖ ସବୁରୁ ଓଡ଼ିଶାରେ ସଂସ୍କୃତ, ପାଲି, ପ୍ରାକୃତ ଓ ଓଡ଼ିଆ ଭାଷାର ଗତି ଓ ପ୍ରକୃତି ସମ୍ପର୍କରେ କିଞ୍ଚିତ ସୂଚନା ମିଳୁଥିଲେହେଁ, ସାହିତ୍ୟ କ୍ଷେତ୍ରରେ ସଂସ୍କୃତ ଭାଷାର ଅଖଣ୍ଡ ରାଜତ୍ୱ ଚାଲିଥିଲା । ରାଜାମାନେ ରାଜଦରବାରେ ପଣ୍ଡିତମାନଙ୍କୁ ପାଳନ କରି ଏହି ସାହିତ୍ୟର ଉତ୍ତରୋତ୍ତର ଉନ୍ନତି ପାଇଁ ସହାୟକ ହୋଇଥିଲେ । ଜାତିଶ୍ରେଷ୍ଠ ବ୍ରାହ୍ମଣମାନେ ଭାଷାଶ୍ରେଷ୍ଠ ସଂସ୍କୃତକୁ ସମ୍ବଳ କରି ରାଜାମାନଙ୍କ ସହାୟତାରେ ବହୁ ଦିନ ପର୍ଯ୍ୟନ୍ତ ପ୍ରାକୃତ, ଅପଭ୍ରଂଶ ଓ ଓଡ଼ିଆ ଭାଷାର ବିକାଶକୁ ଅବରୁଦ୍ଧ କରିଥିଲେ ହେଁ, ପରବର୍ତ୍ତୀ ଯୁଗରେ ଏହା ଆଉ ସମ୍ଭବ ହେଲା ନାହିଁ । ସାରଳା ଦାସ ଓଡ଼ିଆରେ ମହାଭାରତ, ରାମାୟଣ ଓ ଚଣ୍ଡୀପୁରାଣ ପରି ବିରାଟକାୟ ଗ୍ରନ୍ଥ ଲେଖିଦେବା ପରେ ଓଡ଼ିଆ ଭାଷାକୁ ସମୃଦ୍ଧ କରିବା ପାଇଁ ଲାଗିପଡ଼ିଲେ । ଓଡ଼ିଆ ଭାଷାର ଶକ୍ତି ଦାର୍ଶନିକ ଅନୁଚିନ୍ତାର ଗହନ ତତ୍ତ୍ୱରାଜି ଓଡ଼ିଆରେ ପ୍ରକାଶିତ ହେବା ପରେ ଲୋକେ ବିଭିନ୍ନ ରୂପରେ ମୌଳିକ ଗ୍ରନ୍ଥମାନ ରଚନା କଲେ । କାବ୍ୟ, କବିତା, ଗୀତା, ସଂହିତା, ପଟଳ, ମାଳିକା, କୋଇଲି ଓ ଚଉତିଶାରେ ଓଡ଼ିଆ ସାହିତ୍ୟ ସମୃଦ୍ଧ ହେବାରେ ଲାଗିଲା । ସାରଳା ଦାସଙ୍କ ଦାଣ୍ଡୀବୃତ୍ତ ସହିତ ବହୁ ପ୍ରକାର ରାଗ, ରାଗିଣୀର ପ୍ରୟୋଗରେ ଓଡ଼ିଆ ସାହିତ୍ୟରେ ବୈଚିତ୍ର୍ୟ ସୃଷ୍ଟି ହେଲା । ଏ ସବୁରେ ବଳରାମ ହିଁ ଥିଲେ ଅଗ୍ରଣୀ ।

ଷୋଡ଼ଶ ଶତାବ୍ଦୀ ପୂର୍ବରୁ ଓଡ଼ିଶାରେ ଶିକ୍ଷାଦାନ ମୁଖ୍ୟତଃ ସଂସ୍କୃତ ଭାଷାରେ ହିଁ ହେଉଥିଲା । ବେଦ, ବେଦାନ୍ତ, ଛନ୍ଦ, ବ୍ୟାକରଣ, ଜ୍ୟୋତିଷ ଓ ଆୟୁର୍ବେଦ ପ୍ରଭୃତି ଥିଲା ପାଠ୍ୟକ୍ରମର ଅନ୍ତର୍ଭୁକ୍ତ । ସଂସ୍କୃତ ଶିକ୍ଷାକୁ ପରିତ୍ୟାଗ କରିବା ପରେ ଅକ୍ଷର ଶିକ୍ଷାପଦ୍ଧତି ପ୍ରାୟ ସଂସ୍କୃତ-ଧାରାକୁ ଅନୁସରଣ କରିଥିଲା । ସାରଳା ଦାସ ତାଙ୍କ ମହାଭାରତରେ ଓ ନାରାୟଣ ଦାସ ତାଙ୍କ ରୁଦ୍ରସୁଧାନିଧିରେ ଶିକ୍ଷାଦାନ ପଦ୍ଧତିର ଯେଉଁ ସୂଚନା ଦେଇଛନ୍ତି, ସେଥିରେ ଅକ୍ଷର-ଶିକ୍ଷା ପ୍ରାୟ ସଂସ୍କୃତ ସଦୃଶ ହୋଇଥିଲା ହେଁ, ଭାଷା ଶିକ୍ଷା ବେଳକୁ ଏହା ସ୍ୱତନ୍ତ୍ର ହୋଇଯାଇଥିଲା । ସଂସ୍କୃତ ଭାଷା-ଶାସିତ ବିଦ୍ୟାଳୟ ସବୁରେ ଓଡ଼ିଆ ଭାଷା ପାଇଁ କୌଣସି ସ୍ଥାନ ନଥିଲା । ଏ ଦିଗରେ ବଳରାମ ହିଁ ପ୍ରଥମେ ଶିଶୁ-ଶିକ୍ଷା ପାଇଁ ରଚନା କଲେ କମଳ ଲୋଚନ ଚଉତିଶା ଓ ଅନ୍ୟାନ୍ୟ କବିତା । ବିଂଶ ଶତାବ୍ଦୀର ପ୍ରାରମ୍ଭ ପର୍ଯ୍ୟନ୍ତ ଏହି ଚଉତିଶା ହିଁ ଥିଲା ପ୍ରାଥମିକ ଶିକ୍ଷାର ପ୍ରଧାନ ପାଠ । ବଳରାମଙ୍କୁ ହିଁ ଏ ଆହ୍ୱାନର ସମ୍ମୁଖୀନ ହେବାକୁ ପଡ଼ିଥିଲା ।

ଷୋଡ଼ଶ ଶତାବ୍ଦୀ ବେଳକୁ ହିନ୍ଦୁମାନଙ୍କର ସାମାଜିକ ବ୍ୟବସ୍ଥା ପୂର୍ବପରି ଆଉ ସୁଦୃଢ଼ ନଥିଲା । ସେତେବେଳକୁ ମୁଖ୍ୟ ଚାରିଜାତି ବ୍ୟତୀତ ବହୁ ଉପଜାତିର ସୃଷ୍ଟି

ହୋଇସାରିଥିଲା । ବ୍ରାହ୍ମଣମାନେ ମଧ୍ୟ ବେଦକୁ ଅନୁସରଣ କରି, ଯେପରି ନିଜକୁ ସାମବେଦୀୟ, ଯଜୁର୍ବେଦୀୟ, ଋକ୍‌ବେଦୀୟ ଓ ଅଥର୍ବ ବେଦୀୟ କହୁଥିଲେ, ସେହିପରି କାନ୍ୟକୁବ୍‌ଜୀୟ, ଶାସେନୀ, ଶ୍ରୋତ୍ରୀୟ ଓ ବଳଭଦ୍ର ଗୋତ୍ରୀୟ ପ୍ରଭୃତି ନାମରେ ନାମିତ କରୁଥିଲେ । ପରସ୍ପର ମଧ୍ୟରେ ବୁଝାମଣାର ଅଭାବ ପରିଲକ୍ଷିତ ହେଉଥିଲା । ସେମାନେ ନିଜର କୁଳ ବୃତ୍ତିକୁ ପରିତ୍ୟାଗ କରି ବିଭିନ୍ନ ଭାବେ ନିଜର ପ୍ରୌଢ଼ୀ ପ୍ରକାଶ କରୁଥିଲେ । ବାଲ୍ୟବିବାହକୁ ପ୍ରଚଳନ କରି ଓ ବିଧବା ବିବାହକୁ ବିରୋଧ କରି ସେମାନେ ସମାଜରେ ବ୍ୟଭିଚାରକୁ ପ୍ରଶ୍ରୟ ଦେଉଥିଲେ । ଅନ୍ୟ ଜାତିମାନଙ୍କ ଉପରେ ସେମାନଙ୍କ କର୍ତ୍ତୃତ୍ୱ ହ୍ରାସ ପାଇଥିଲା । କେବଳ ବ୍ରାହ୍ମଣମାନେ ନୁହନ୍ତି, ଅନ୍ୟ ଜାତିମାନେ ମଧ୍ୟ ନିଜର କୁଳୋଚିତ କାର୍ଯ୍ୟରୁ ଦୂରେଇ ଯାଇଥିଲେ । ହିନ୍ଦୁମାନଙ୍କ ମଧ୍ୟରେ ଜାତି ବ୍ୟବସ୍ଥା ଯେଉଁ ମହତ୍‌କାର୍ଯ୍ୟ ପାଇଁ ପ୍ରଚଳିତ ହୋଇଥିଲା, ବିଭିନ୍ନ ସାମାଜିକ, ରାଜନୈତିକ ଓ ସାଂସ୍କୃତିକ କାରଣରୁ ତାହା ନଷ୍ଟ ହେବାରେ ଲାଗିଥିଲା । ବ୍ରାହ୍ମଣମାନେ ଆଦର୍ଶଚ୍ୟୁତ ହୋଇଥିଲେ । ରାଜାମାନେ ବିଳାସରେ ଲିପ୍ତ ଥିଲେ । ତଥାକଥିତ ମୁନି, ଋଷି ଓ ତପସ୍ୱୀମାନେ ସମାଜକୁ ପ୍ରତାରିତ କରି ସୁନ୍ଦରୀ କନ୍ୟା ସନ୍ଧାନରେ ଲିପ୍ତ ଥିଲେ । ସମସ୍ତ ଉଚ୍ଚ ଜାତିର ଏକମାତ୍ର ଧ୍ୟେୟ ଥିଲା, ଶୂଦ୍ର ଜାତିର ନିଷ୍ପେଷଣ । ସେମାନଙ୍କୁ ଶିକ୍ଷା ଓ ସଭ୍ୟତାରୁ ଦୂରେଇ ଦେଇ ଲୁଣ୍ଠିତ କରିବା ଥିଲା ଉଚ୍ଚ ଜାତିର ମହାନ୍ କାର୍ଯ୍ୟ । ବଳରାମଙ୍କୁ ଏକପକ୍ଷରେ ଏଥିରେ ମଧ୍ୟ ନେତୃତ୍ୱ ନେବାକୁ ପଡ଼ିଥିଲା । ସେ ସମାଜରେ ଶ୍ରେଷ୍ଠ ବୋଲାଉଥିବା ବ୍ରାହ୍ମଣ ଓ ତପସ୍ୱୀମାନଙ୍କର ଭଣ୍ଡତା ତଥା ଅର୍ଥଲୋଭୀ ବ୍ରାହ୍ମଣମାନଙ୍କର ନୀଚତାକୁ ଯେପରି ସର୍ବସମକ୍ଷରେ ପ୍ରଚାର କରିଥିଲେ, ସେହିପରି ଶୂଦ୍ର ବାଉରୀକୁ ଗୀତା ପାଠ ଅଧିକାର ଦେଇ, ଜଡ଼ ହରିଦାସ ପରି ମୂକ, ନିଷ୍ପେସିତ ଜନତାକୁ ବେଦାନ୍ତ ପାଠ କରାଇ, ବେଶ୍ୟାସକ୍ତ ଭକ୍ତଙ୍କୁ ଭଗବାନଙ୍କ ବିଶ୍ୱାସ ପାତ୍ର ରୂପେ ପ୍ରତିଷ୍ଠିତ କରି ଏବଂ ବ୍ରାହ୍ମଣଙ୍କଠାରୁ ନୀଚ ଜାତିର ଭକ୍ତକୁ ଉଚ୍ଚସ୍ଥାନ ଦେଇ ସେ ତତ୍‌କାଳୀନ ସମାଜରେ ଏକ ପ୍ରଚଣ୍ଡ ବିଦ୍ରୋହର ସୂତ୍ରପାତ କଲେ । ଶ୍ଳୋକ, ସ୍ମୃତି, ଦୋହା, ସାକ୍ଷୀ ଓ ଶବ୍‌ଦକୁ କଣ୍ଠସ୍ଥ କରି ପାଣ୍ଡିତ୍ୟ ପ୍ରଦର୍ଶନ କରୁଥିବା ତଥାକଥିତ ପଣ୍ଡିତମାନଙ୍କୁ ସେ ଯେପରି ତିରସ୍କାର କରିଥିଲେ, ସେହିପରି ଚିତା-ଚଇତନ କାଟି କଷାୟ ବସନ ପରିଧାନ କରି ବା ଦିଗମ୍ବର ରହି ବା ହରିନାମ ଉଚ୍ଚାରଣ କରି ଗ୍ରାମରୁ ଗ୍ରାମକୁ ବୁଲୁଥିବା ସାଧୁମାନେ ଯେ ପ୍ରକୃତ ଭଗବତ୍‌ପ୍ରେମୀ ନୁହନ୍ତି, ଏକଥା ସର୍ବପ୍ରଥମେ ବଳରାମହିଁ ଅତି ଦୃଢ଼ କଣ୍ଠରେ ଘୋଷଣା କରିଥିଲେ ।

ହିନ୍ଦୁସଂସ୍କୃତିର ମୂଳତତ୍ତ୍ୱ ହେଲା- ତ୍ୟାଗ, ପରୋପକାର ଓ ସମସ୍ତ ଜଗତର ମଙ୍ଗଳ କାମନା । ଷୋଡ଼ଶ ଶତାବ୍ଦୀ ବେଳକୁ ହିନ୍ଦୁ ଜାତିର ଏହିସବୁ ମହାନ୍ ଆଦର୍ଶ ପୋଥିଗତ

ବିଦ୍ୟାରେ ପରିଣତ ହୋଇସାରିଥିଲା । ସେମାନେ ନିଜର ସ୍ୱାର୍ଥ ବ୍ୟତୀତ ଆଉ କିଛି ଦେଖିପାରୁ ନଥିଲେ । ଦେଶ ପାଇଁ, ଜାତି ପାଇଁ ବା ପରିବାର ପାଇଁ ଆବଶ୍ୟକ ବେଳେ ପ୍ରାଣତ୍ୟାଗ କରିବାର ପରଂପରାକୁ ଭୁଲି, ସେମାନେ ନିଜର ସ୍ୱାର୍ଥସାଧନ ପାଇଁ ଆତ୍ମୀୟମାନଙ୍କୁ ହତ୍ୟା କରିବା ପାଇଁ ପଶ୍ଚାତ୍‌ପଦ ହେଉନଥିଲେ । ଏହା ପ୍ରାୟ ସବୁ ଜାତି ଓ ସବୁ ପରିବାରରେ ଦେଖିବାକୁ ମିଳୁଥିଲେହେଁ, ରାଜପରିବାରରେ ଏହାର ବିଭୀଷିକା ଲୋକମାନଙ୍କୁ ବିସ୍ମିତ କରୁଥିଲା । କେବଳ ସେତିକି ନୁହେଁ, ରାଜାମାନେ ସେମାନଙ୍କର ବିଶ୍ୱାସୀ ମନ୍ତ୍ରୀ, ସାମନ୍ତ, ସେନାପତି ମାନଙ୍କୁ ସନ୍ଦେହ ଚକ୍ଷୁରେ ଦେଖୁଥିଲେ । ସେବକମାନେ ମଧ୍ୟ ନିଜ ନିଜର କର୍ତ୍ତବ୍ୟ ପାଳନରେ ଅବହେଳା ପ୍ରଦର୍ଶନ କରୁଥିଲେ । ରାଜାମାନେ ପ୍ରଜାପାଳନ ପରିବର୍ତ୍ତେ, ପ୍ରଜାମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରିବାକୁହିଁ ନିଜ ରାଜପଦବୀର ଶ୍ରେଷ୍ଠ କାର୍ଯ୍ୟ ରୂପେ ବିବେଚନା କରୁଥିଲେ । ଏସବୁ ଫଳରେ ହିନ୍ଦୁ ସଂସ୍କୃତି ପାଇଁ ଯେଉଁ ସଙ୍କଟ ସୃଷ୍ଟି ହୋଇଥିଲା, ସେଥିରେ ମୁସଲମାନମାନଙ୍କ ଭାରତ ଆକ୍ରମଣର ଆଉ ଏକ ନୂଆ ବିପଦ ସୃଷ୍ଟି କଲା । ମୁସଲମାନ ସେନାର ପ୍ରତିରୋଧ କରିବାରେ ଅସୀମ ବୀରତ୍ୱର ପରିଚୟ ଦେଉଥିଲେହେଁ, ମୁସଲମାନମାନଙ୍କ ପ୍ରଚଣ୍ଡ ଆକ୍ରମଣରେ ପ୍ରତିହତ ହେବାପାଇଁ ବାଧ୍ୟ ହେଉଥିଲେ । ଏହିପରି ଭାବେ ସୁଯୋଗ ଉଣ୍ଡି ମୁସଲମାନ ଶାସକମାନେ ଗୋଟିକ ପରେ ଗୋଟିଏ ରାଜ୍ୟକୁ ନିଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରି ଏକ ବିଶାଳ ସାମ୍ରାଜ୍ୟର ଗଠନ କରିବାକୁ ସମର୍ଥ ହୋଇପାରିଥିଲେ । କଳହ ହେଉଛି କଳିଯୁଗର ଧର୍ମ । ଏଥିରୁ ଦେଶକୁ ଉଦ୍ଧାର କରିବାପାଇଁ ହିନ୍ଦୁମାନେ ରାମଙ୍କ ଆଦର୍ଶକୁ ଗ୍ରହଣ କରିଥିଲେ । ଗୃହ ବିବାଦରୁ ଖଣ୍ଡ-ବିଖଣ୍ଡିତ ହେବାକୁ ଯାଉଥିବା ଅଯୋଧ୍ୟାକୁ ଶ୍ରୀରାମ ନିଜର ତ୍ୟାଗପୂତ ଜୀବନ ଦ୍ୱାରା ଯେପରି ରକ୍ଷା କରିଥିଲେ, ସେହି ମହାନ୍ ଆଦର୍ଶକୁ ଦେଶ ସମ୍ମୁଖରେ ଦେଖାଇବା ପାଇଁ, ବଳରାମ ରଚନା କଲେ ଯୁଗୋପଯୋଗୀ ଜଗମୋହନ ରାମାୟଣ ।

ବଳରାମ ଥିଲେ ଷୋଡ଼ଶ ଶତାବ୍ଦୀ ଓଡ଼ିଶାରେ ଉପୁଜିଥିବା ସଙ୍କଟର ତ୍ରାଣକର୍ତ୍ତା । ଯୁଗ ଯୁଗ ଧରି ଭାରତରେ ପ୍ରଚଳିତ ଥିବା ସାମାଜିକ ଓ ସାଂସ୍କୃତିକ ବ୍ୟବସ୍ଥାକୁ ଧ୍ୱଂସ ମୁଖରୁ ରକ୍ଷା କରି ସେ ଦେଶକୁ ଏକ ନୂତନ ପଥ ପ୍ରଦର୍ଶନ କରିଥିଲେ । ସଂସ୍କୃତ ଭାଷା ଓ ସାହିତ୍ୟରେ ଅଗାଧ ପାଣ୍ଡିତ୍ୟ ଅର୍ଜନ କରିଥିଲେ ହେଁ, ସେ ଓଡ଼ିଆ ଭାଷାକୁ ଜାତିର ପ୍ରକୃତ ଭାଷା ରୂପେ ସ୍ୱୀକାର କଲେ । ଯୋଗୀ, ଋଷି, ମୁନି, ବ୍ରାହ୍ମଣ ଓ ପଣ୍ଡିତମାନଙ୍କ ପ୍ରତି ତାଙ୍କ ହୃଦୟରେ ଅସୀମ ସମ୍ମାନ ଥିଲେହେଁ, ଜାତି ବିଚାର ନ କରି ସେ ଭଗବାନଙ୍କ ପ୍ରକୃତ ଭକ୍ତମାନଙ୍କୁ ସମାଜରେ ଶ୍ରେଷ୍ଠ ବୋଲି ଗ୍ରହଣ କରିଥିଲେ । ଶାସନ କ୍ଷେତ୍ରରେ ରାଜାମାନଙ୍କ ଆଧିପତ୍ୟକୁ ଅସ୍ୱୀକାର କରୁନଥିଲେ ହେଁ, ସେମାନଙ୍କ ଅନ୍ୟାୟ ବିଚାରକୁ

ମୁଣ୍ଡପାତି ସହିନେବାକୁ ସେ ପ୍ରସ୍ତୁତ ନଥିଲେ । ସେ ଜାଣିଥିଲେ, ସବୁପ୍ରକାର ଜାତି, ସବୁପ୍ରକାର ସମାଜ ଓ ସବୁପ୍ରକାର ସାମାଜିକ ନିୟମର ଊର୍ଦ୍ଧ୍ୱରେ ଜଗମୋହନ ଜଗନ୍ନାଥହିଁ ବିରାଜିତ । ତାଙ୍କରି ଉପରେ ଅଖଣ୍ଡ ବିଶ୍ୱାସ ରଖି, ନିର୍ଭୀକ ବଳରାମ ଅଟଳ ମହାମେରୁ ସଦୃଶ ଜାତି-ନନ୍ଦୀଘୋଷର ସାରଥୀ ଭାବେ ଜାତିକୁ ସଙ୍କଟ କାଳରେ ରକ୍ଷା କରିବା ଲାଗି ଆବିର୍ଭୁତ ହୋଇଥିଲେ । ସେଥିପାଇଁ ଲୋକଙ୍କ ମନରେ ଆତ୍ମ-ପ୍ରତ୍ୟୟ ଭାବ ଜାଗ୍ରତ କରିବା ପାଇଁ ସେ ଘୋଷଣା କଲେ, "ମୁଁ ଶ୍ରୀଜଗନ୍ନାଥଙ୍କ ବେଟା ।"

## କବି ବଳରାମଙ୍କ ଜନ୍ମ, ପିତାମାତା ଓ ବାସସ୍ଥାନ

ଓଡ଼ିଶାରେ ଯେତେବେଳେ ସୁଦୃଢ଼ ଗଜପତି ଶାସନ ପ୍ରତିଷ୍ଠିତ ଥିଲା, ସେତିକିବେଳେ ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ କାଳରେ ଏକ ଧର୍ମପ୍ରାଣ ରାଜକର୍ମଚାରୀଙ୍କ ଗୃହରେ ମହାପୁରୁଷ ବଳରାମଙ୍କ ଆବିର୍ଭାବ ହୋଇଥିଲା ।

ଭାରତର କବିମାନେ ସାଧାରଣତଃ ନିଜ ସମ୍ପର୍କରେ ନୀରବ ରହୁଥିଲେ । ନିଜ କଥା ନିଜେ କହୁନଥିଲେ । ଗ୍ରନ୍ଥ ମଧ୍ୟରେ ନିଜ ନାମ ମଧ୍ୟ ଉଲ୍ଲେଖ କରୁନଥିଲେ । କର୍ମ କରୁଥିଲେ; କିନ୍ତୁ କର୍ମଫଳର ବିଚାରକ ଥିଲେ ସର୍ବନିୟନ୍ତା ଭଗବାନ । ଗୀତାର ଏହି ମହାନ୍‌ବାଣୀ ଥିଲା ଭାରତୀୟ ସଂସ୍କୃତିର ମୂଳ ସ୍ୱରୂପ । ଷୋଡ଼ଶ ଶତାବ୍ଦୀ ବେଳକୁ ଏଥିରେ କିଞ୍ଚିତ ପରିବର୍ତ୍ତନ ହୋଇଥିଲା । କବିମାନେ ଭଣିତା ଅଂଶରେ ନିଜ ନାମକୁ ଲିପିବଦ୍ଧ କରୁଥିଲେହେଁ, ଜନ୍ମକାଳ, ପିତାମାତା ଓ ପରିବାରଙ୍କ ସମ୍ପର୍କରେ ପ୍ରାୟ ନୀରବ ରହୁଥିଲେ । ବଳରାମ ଥିଲେ ସେହି ପରମ୍ପରାର କବି । ସେଥିପାଇଁ ତାଙ୍କର ଗ୍ରନ୍ଥରାଜିରୁ ତାଙ୍କ ସମ୍ପର୍କରେ ସବିଶେଷ ବିବରଣୀ ମିଳେ ନାହିଁ । ତେବେ ଭଗବାନଙ୍କ ସ୍ତୁତିଗାନ କଲାବେଳେ, ଆତ୍ମନିବେଦନ ରୂପକ ଉକ୍ତିସବୁ ରଚନା କଲାବେଳେ, ସେ ଯେଉଁ କେତେକ ପଂକ୍ତି ନିଜ ସମ୍ପର୍କରେ କହିଥିଲେ, ତାହାହିଁ ତାଙ୍କ ଜୀବନୀର ମୁଖ୍ୟ ମୂଲ୍ୟବାନ ଉପାଦାନ । ସେହିସବୁ ପଂକ୍ତି ଉପରେ ନିର୍ଭର କରି ପରବର୍ତ୍ତୀ ଯୁଗରେ କବିଙ୍କ ସମ୍ପର୍କରେ ପ୍ରଚଳିତ ଥିବା କିମ୍ବଦନ୍ତୀ ଓ ଅନ୍ୟାନ୍ୟ କବିଙ୍କ ଉକ୍ତିକୁ ଆଧାର କରି ନିମ୍ନରେ ମହାପୁରୁଷ ବଳରାମଙ୍କ ଏକ ସ୍ଥୁଳ ପରିଚୟ ପ୍ରଦାନ କରାଯାଇଛି ।

କବି ବଳରାମଙ୍କର ପ୍ରସିଦ୍ଧ ଗ୍ରନ୍ଥ 'ଜଗମୋହନ ରାମାୟଣ' । କବିଙ୍କ ମତରେ ଏହାର ପ୍ରକୃତ ସ୍ରଷ୍ଟା ନୀଳାଚଳ ପତି ଜଗନ୍ନାଥ । ସେ କବିଙ୍କ ହୃଦୟରେ ବସି କବିଙ୍କୁ

ରାମାୟଣର ପଦ ସବୁକୁ କହୁଥିଲେ । କବି କେବଳ ଜଣେ ବିଶିଷ୍ଟ ଲେଖନକାର ଭାବେ [illegible] ସେହିସବୁ ପଂକ୍ତିକୁ ଜଗତର ମଙ୍ଗଳ ପାଇଁ ଲେଖିଲେ ତାଳପତ୍ର [illegible]ରେ [illegible], କଥା କହିବାବେଳେ କବି ନିଜ ନାମକୁ ଗ୍ରନ୍ଥ ମଧ୍ୟରେ ବାରମ୍ବାର ଉଲ୍ଲେଖ କଲେ ।

ଏହିପରି କେତେକ ପଂକ୍ତି ଉତ୍ତରାକାଣ୍ଡରୁ ମିଳିଥାଏ । ସେଥିରେ କବି କହିଛନ୍ତି

"ଜନ୍ମରୁ ମୁରୁଖ ମୋର ଅଳପ ବୟସ
ଗ୍ରନ୍ଥ କଲାବେଳେ ମୋତେ ବରଷ ବତିଶ ।
ଦାରା ସୁତ ଧନ ଜନ ସୁଖଭୋଗ ଶିରୀ
ଅଳପେ ଆପଣେ ଦେଇଅଛନ୍ତି ତା ହରି ।
ଏ ମର୍ତ୍ତ୍ୟଲୋକେ ଯେ ମୁହିଁ ଜଗନ୍ନାଥ ସେବି
ଇଚ୍ଛା ହୋଇଲେ ମୁଁ ବଇକୁଣ୍ଠକୁ ଯେ ଯିବି ।
ସ୍ୱାମୀର ସେବକ ମୁଁ ସନ୍ନିଧେ ଖଟିଥାଇଁ
ଏ ଭବସାଗରେ ମୋତେ କିଛି ଚିନ୍ତା ନାହିଁ ।

ଏହାହିଁ ହେଉଛି କବିଙ୍କ ସାଂସାରିକ ଜୀବନର ସଂକ୍ଷିପ୍ତ ପରିଚୟ । 'ସ୍ୱାମୀର ସେବକ ମୁଁ ସନ୍ନିଧେ ଖଟିଥାଇଁ' ପଂକ୍ତିରୁ ଜଣାଯାଏ ଯେ କବି ଥିଲେ ସ୍ୱାମୀ ଜଗନ୍ନାଥଙ୍କର ସେବକ । 'ସନ୍ନିଧେ ଖଟିଥାଇଁ'ରୁ କବି ପୁରୀରେ ରହୁଥିବାର ସୂଚନା ମିଳେ ।

କବିଙ୍କର ଏହି ଉକ୍ତି ଆହୁରି ସ୍ପଷ୍ଟଭାବେ ପ୍ରକାଶିତ ହୁଏ 'ଭାବସମୁଦ୍ର'ରେ । ନିମ୍ନରେ 'ଭାବସମୁଦ୍ର'ର କେତୋଟି ପଂକ୍ତି ଉଦ୍ଧାର କରାଯାଇଛି ।

(୧) "ନୀଳକନ୍ଦରେ ମୋତେ ରୁହାଇଲୁ
ଯେତେ ସୁଖ ମୋତେ ପ୍ରଥମେ ଦେଲୁ ।
ନାଥ ମୁଁ ସେହି ମତି ଜାଣିଥିଲି,
ତୋର ପାଦପଦ୍ମେ ସେବା ମୁଁ କଲି ।
(୨) ତୋ ତହୁଁ କ୍ଷେତ୍ର ଶଏ ଗୁଣେ ବଡ଼
ତିନି ତ୍ରଇଲୋକେ ଅଟଇ ଗାଢ଼ ।
ନାଥ ତୁମେ ଯେ କ୍ଷେତ୍ର ଦୁହେଁ ସରି
ସାନ ବଡ଼ ଯେ ବୋଲିଣ ନ ପାରି ।
ତେଣୁକରି କ୍ଷେତ୍ରେ ରହିଲି ମୁହିଁ

ବଳି ଦାସଙ୍କୁ ଘଉଡ଼ିଣ ଦେଇ ।

ଏଥିରେ ଥିବା ଦୁଇଟି ପଂକ୍ତିରୁ କବିଙ୍କ ଜନ୍ମ ତଥା ବାସସ୍ଥାନ ସମ୍ପର୍କରେ ସୂଚନା ମିଳେ । 'ନୀଳକନ୍ଦରେ ମୋତେ ରୁହାଇଲୁ' ଏବଂ 'ତେଣୁକରି କ୍ଷେତ୍ରେ ରହିଲି ମୁହିଁ' ପଂକ୍ତିରୁ କବି ପୁରୀବାସୀ ଥିବା ସ୍ପଷ୍ଟ ଭାବେ ଜଣାଯାଏ ।

କବିଙ୍କ ଭକ୍ତ ଜୀବନର ଲିପିକାର ଦାଢ଼୍ୟତାଭକ୍ତିର ଲେଖକ ରାମଦାସ ମଧ୍ୟ କବିଙ୍କୁ ପୁରୀବାସୀ ରୂପେ ଉଲ୍ଲେଖ କରିଛନ୍ତି ।

"ପୁରୁଷୋତ୍ତମ ତା'ର ଘର
କୁଟୁମ୍ବ ଘେନି ସଙ୍ଗତର
ଉତ୍ତମ ଜନେ ଆଶ୍ରା କରି
ନିତି ବୁଲଇ ଭିକ୍ଷାକରି"

ଏହି ପ୍ରସଙ୍ଗରେ ବାଳିଙ୍ଗା ଦାସଙ୍କ 'ଅଗତ ଭବିଷ୍ୟ ମାଳିକା'ରୁ କେତେକ ପଂକ୍ତି ଉଦ୍ଧାର କରାଯାଇପାରେ ।

"ବୋଲେ ମହାପ୍ରଭୁ ଶୁଣେ ନାରାୟଣ
କାଲି ଗଲି ବାଙ୍କି ମୁହାଣକୁ ଶ୍ରୀଗୁରୁଙ୍କୁ ଦର୍ଶନ କରିଣ ।
ବାହୁଡ଼ି ଅଇଲି ମୁହିଂ ଅର୍ଦ୍ଧ ଶୋସେନୀକ ଯାଏ
ଦେଖିଲି ଚଉଷଠୀ ଭକ୍ତଗଣ ବିଚାର କରନ୍ତି ଥୋକାଏ ।
ସମସ୍ତଙ୍କୁ ସେବିଲି ବହୁତ କଲି ନମସ୍କାର
ବଳରାମ ଅନନ୍ତ ଶିଶୁ ଚାହିଁଲେ ଆଦର ।
ମୋତେ ବଳରାମ ଦାସେ ବୋଇଲେ ତୁମ୍ଭର ନାମ କିସ
ମୁହିଂ କହିଲି ମୋର ନାମ ମା ବାପ ଦେଲେ ବାଳିଙ୍ଗା ଦାସ ।"

ବାଳିଙ୍ଗା ଦାସଙ୍କ ଏହିସବୁ ପଂକ୍ତିରେ ଥିବା 'କାଲି, ଗଲି,' 'ବାହୁଡ଼ି ଅଇଲି' 'ଦେଖିଲି' 'ସମସ୍ତଙ୍କୁ ସେବିଲି' 'ବହୁତ କଲି ନମସ୍କାର' 'କବଳରାମ ଅନନ୍ତ ଶିଶୁ ଚାହିଁଲେ' 'ମୋତେ ବଳରାମ ଦାସେ ବୋଇଲେ' 'ମୁହିଂ କହିଲି' ପ୍ରଭୃତି ପ୍ରୟୋଗରୁ କବି ସ୍ୱଚକ୍ଷୁରେ ବଳରାମଙ୍କୁ ପୁରୀର ଅର୍ଦ୍ଧଶୋସେନୀଙ୍କଠାରେ ଦେଖି ତାଙ୍କ ସହ କଥାବାର୍ତ୍ତା କରିଥିବା ପରି ମନେହୁଏ । ବାଳିଙ୍ଗା ଦାସ ନିଜକୁ ବଳରାମଙ୍କ ଶିଷ୍ୟ ରୂପେ ପ୍ରଚାର କରିଥିଲେହେଁ, ସେ ଥିଲେ ପରବର୍ତ୍ତୀ କାଳର କବି ଏବଂ ଏ ସବୁ ପଂକ୍ତିକୁ ଆଧାତ୍ମିକ ଜୀବନର ଭବ୍ୟ ଅନୁଭବ ଭାବେ ଗ୍ରହଣ କରାଯାଇପାରେ । ତେବେ ବି ଏଥିରେ କବି

ବଳରାମଙ୍କୁ ପୁରୀବାସୀ ରୂପେ ଗ୍ରହଣ କରାଯାଇଛି ।

କବି ପୁରୀବାସୀ ଥିଲେହେଁ, ସେ ଅନେକ ସମୟରେ ପୁରୀ ଛାଡ଼ି ଓଡ଼ିଶାର ଅନ୍ୟ ସ୍ଥାନରେ ମଧ୍ୟ ରହୁଥିଲେ । ଏହାର ପ୍ରଥମ ସୂଚନା ମିଳେ 'ଜଗମୋହନ ରାମାୟଣ'ର ଲଙ୍କାକାଣ୍ଡରୁ-

"ପୁଣି ବିଚାରଇ ଜଣାଇବି ଜଗନ୍ନାଥ
ତେବେ ସେ କହିବି ଲଙ୍କାକାଣ୍ଡ ଅର୍ଥ ।
ଏତେକ ବିଚାରିଣ ଶ୍ରୀପୁରୁଷୋତ୍ତମ ଗଲି,
ଗୁଣ୍ଡିଚା ବିଜେ ଯାଇ ରଥରେ ଦେଖିଲି ।"

କବିଙ୍କର ଏହି ଉକ୍ତିରୁ ଜଣାଯାଏ, ଲଙ୍କାକାଣ୍ଡ ରଚନା କଲାବେଳକୁ କବି ପୁରୀରେ ନଥିଲେ । ରଥଯାତ୍ରା ଦିନ ସେ ପୁରୀ ଆସି ବଡ଼ଦାଣ୍ଡରେ ଜଗନ୍ନାଥଙ୍କୁ ଦର୍ଶନ କରି ଓ ତାଙ୍କର ଆଜ୍ଞା ପାଇ ନିଜ ବାସସ୍ଥାନକୁ ଫେରିଯାଇଥିଲେ । ଲଙ୍କାକାଣ୍ଡରୁ ଏପରି ଉଲ୍ଲେଖ ମିଳୁଥିଲେହେଁ, ଉତ୍ତରାକାଣ୍ଡରେ କବି ପୁଣି ପୁରୀରେ ଜଗନ୍ନାଥଙ୍କ ସେବକ ଭାବେ ରହୁଥିବା ଜଣାଯାଏ । କବିଙ୍କର ଏହି ବିରୋଧାତ୍ମକ ଉକ୍ତିରୁ 'ଶ୍ରୀପୁରୁଷୋତ୍ତମ ଗଲି'ର ଅର୍ଥ ଅସ୍ପଷ୍ଟ ହୋଇଯାଏ ।

କବିଙ୍କ ପ୍ରସିଦ୍ଧି ଦେଶରେ ବୃଦ୍ଧି ପାଇବା ପରେ ଓଡ଼ିଶାର ବହୁ ଅଞ୍ଚଳ ବିଶେଷକରି ପୁରୀର ଆଖପାଖ ଅଞ୍ଚଳକୁ ସଂପୃକ୍ତ କରି କବିଙ୍କ ବିଷୟରେ ବହୁ କିମ୍ବଦନ୍ତୀ ଗଢ଼ିଉଠେ । ଶିଶୁ ଅନନ୍ତଙ୍କ 'ଗରୁଡ଼ ସମ୍ବାଦ' ଗ୍ରନ୍ଥରେ କବିଙ୍କୁ 'ସୁଆଙ୍ଗ ମୁଣୋହି'ରେ ରହୁଥିବା କୁହାଯାଇଛି । ଜନୈକ ଦାସଙ୍କ 'ଭକ୍ତି ଚନ୍ଦ୍ରିକା'ରେ କବିଙ୍କୁ ସମଗରା ଗ୍ରାମବାସୀ ରୂପେ ଚିହ୍ନିତ କରାଯାଇଛି ।

ସମଗରା ଗ୍ରାମ ଦାସ ବଳରାମ
ନିମାନନ୍ଦ ମଠେ ଖେଳି,
ଷୋଳ ଶିଷ୍ୟ ଘେନି ରସ ଭାବରେ ସେ
ମୋତେ ଦେଉଥିବ ଗାଳି ।

ଏଥିରେ ଥିବା 'ରସ ଭାବରେ ସେ ମୋତେ ଦେଉଥିବ ଗାଳି'ରେ କବିଙ୍କ ରଚିତ 'ଭାବସମୁଦ୍ର'ର ପ୍ରତିଧ୍ୱନି ଶୁଣିବାକୁ ମିଳେ । ଈଶ୍ୱର ଦାସଙ୍କ ଚୈତନ୍ୟ ଭାଗବତ'ରେ ବଳରାମଙ୍କୁ ଚନ୍ଦ୍ରପୁର ନିବାସୀ ଭାବେ ଉଲ୍ଲେଖ କରାଯାଇଛି । ଏହା ଯାଜପୁର ନିକଟବର୍ତ୍ତୀ । ଏହିଠାରେ ବଳରାମ ଶ୍ରୀଚୈତନ୍ୟଙ୍କ ସହ ମିଳିତ ହୋଇଥିଲେ ।

ଜନଶ୍ରୁତିରୁ ମିଳୁଥିବା ଚାରୋଟି ସ୍ଥାନ ହେଲା:- (୧) ବକୁ ଗ୍ରାମ, (୨) ଏରବଙ୍ଗ (୩) ଢେଣ୍ଡଣ ଗ୍ରାମ ଏବଂ (୪) ଯମରା ଗ୍ରାମ ।

ବକୁ ଗ୍ରାମ- ନିରାକାରପୁରଠାରୁ ୫ କି:ମି:ର ପୂର୍ବରେ ଅବସ୍ଥିତ ଏହି ଗ୍ରାମରେ ସିଦ୍ଧ ବଳଦେବଙ୍କ ମନ୍ଦିର ବିଦ୍ୟମାନ । ଏହି ମନ୍ଦିରକୁ କେହି କେହି ବଳରାମଙ୍କ ସହ ସଂପୃକ୍ତ କରିଥାନ୍ତି । କଥିତ ଅଛି, କବି ଏହି ଗ୍ରାମର ଜମିଦାରଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ଏହି ଗ୍ରାମରେ କିଛି କାଳ ଅତିବାହିତ କରିଥିଲେ ଓ କବିଙ୍କ ପୂଜାର୍ଚ୍ଚନାର ସୁବିଧା ପାଇଁ ଏହି ମନ୍ଦିରଟି ନିର୍ମିତ ହୋଇଥିଲା । ଏପରି କିମ୍ବଦନ୍ତୀ ସତ୍ତ୍ୱେ ଏଥିରେ ସତ୍ୟତା ନାହିଁ । ମନ୍ଦିର ବେଶି ପ୍ରାଚୀନ ନୁହେଁ । ବୋଧହୁଏ ସିଦ୍ଧ ବଳଦେବ ଓ ସିଦ୍ଧ ବଳରାମଙ୍କ ନାମ ସାଦୃଶ୍ୟରୁ ଏ କିମ୍ବଦନ୍ତୀର ସୃଷ୍ଟି ।

ଏରବଙ୍ଗ- କୋଣାର୍କ ନିକଟବର୍ତ୍ତୀ ଏରବଙ୍ଗ ଗ୍ରାମ କବିଙ୍କ ବାସସ୍ଥାନ ରୂପେ ପ୍ରସିଦ୍ଧ । ଏଠାରେ ମଧ୍ୟ ଏକ ସିଦ୍ଧ ବଳଦେବ ମନ୍ଦିର ବିଦ୍ୟମାନ । କବି ଜୀବନର ଶେଷକାଳରେ ଏହିଠାରେ ଅତିବାହିତ କରିଥିଲେ । ଏହାର ଅନତିଦୂରରେ ଅବସ୍ଥିତ ବେଗୁନିଆ ଗ୍ରାମରେ ଥିବା 'ବଳରାମ ସମାଧି' କବିଙ୍କ ଶେଷ ଜୀବନର ସାକ୍ଷୀରୂପେ ଅଦ୍ୟାପି ସମ୍ମାନିତ ।

ଢେଣ୍ଡଣ ଗ୍ରାମ- ଢେଙ୍କାନାଳ ନିକଟବର୍ତ୍ତୀ ଢେଣ୍ଡଣ ଗ୍ରାମରେ ବଳରାମଙ୍କ ପ୍ରତିଷ୍ଠିତ ମଠ ଦେଖିବାକୁ ମିଳେ । ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ମତରେ ଏହାର ସ୍ଥାପୟିତା ହେଉଛନ୍ତି ଦ୍ୱିତୀୟ ବଳରାମ ।

ଯମରା ଗ୍ରାମ- ଗୋପ ନିକଟବର୍ତ୍ତୀ ଯମରା ଗ୍ରାମରେ ଥିବା ଗାଦି 'ବଳରାମ ଗାଦି' ଭାବେ ପରିଚିତ ।

ଉପରେ ପ୍ରଦତ୍ତ ସ୍ଥାନସବୁ ମଧ୍ୟରୁ ଚନ୍ଦ୍ର ପୁର ଓ ଢେଣ୍ଡଣ ବ୍ୟତୀତ ଅନ୍ୟ ସମସ୍ତ ସ୍ଥାନ ପୁରୀର ନିକଟବର୍ତ୍ତୀ । ଚନ୍ଦ୍ରପୁର କେବଳ ଯେ ପୁରୀଠାରୁ ଦୂରରେ ଅବସ୍ଥିତ ତାହା ନୁହେଁ, ଏହା ବୋଧହୁଏ ବଙ୍ଗୀୟ ବୈଷ୍ଣବ ବଳରାମଙ୍କ ଜନ୍ମସ୍ଥାନ ଚାନ୍ଦପୁରର ପରିବର୍ତ୍ତିତ ଓଡ଼ିଆ ରୂପ । ଈଶ୍ୱର ଦାସ ଉତ୍କଳୀୟ ବଳରାମଙ୍କ କଥା ଲେଖିବାବେଳେ ବଙ୍ଗୀୟ ବଳରାମଙ୍କ ଜନ୍ମସ୍ଥାନ ଚାନ୍ଦପୁରକୁ ଚନ୍ଦ୍ରପୁର ଭାବେ ଉଲ୍ଲେଖ କରିଛନ୍ତି । ଉଭୟ ବଳରାମ ଶ୍ରୀଚୈତନ୍ୟଙ୍କ ସମକାଳୀନ ଥିବା ହେତୁ ଏପରି ଭ୍ରମ ସୃଷ୍ଟିହେବା ଅସ୍ୱାଭାବିକ ନୁହେଁ । ଢେଣ୍ଡଣ ମଠ ପ୍ରାୟ ଅଷ୍ଟାଦଶ ଶତାବ୍ଦୀରେ ପ୍ରତିଷ୍ଠିତ ହୋଇଥିବା ହେତୁ ଆଲୋଚ୍ୟ କବି ବଳରାମ ଏହା ସହ ସଂପୃକ୍ତ ନୁହନ୍ତି ।

ପୁରୀ ଓ ଏହାର ନିକଟବର୍ତ୍ତୀ ସ୍ଥାନ ସବୁକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ ।

(୧) ଜନ୍ମସ୍ଥାନ, (୨) ବାସସ୍ଥାନ ।

ଜଗମୋହନ ରାମାୟଣ, ଭାବସମୁଦ୍ର, ଦାର୍ଢ୍ୟତା ଭକ୍ତି ଅନୁଯାୟୀ ପୁରୀହିଁ କବିଙ୍କ ଜନ୍ମସ୍ଥାନ ଓ ବାସସ୍ଥାନ । କବିଙ୍କ ଜୀବନର ବହୁ ବିଶିଷ୍ଟ ଘଟଣା ପୁରୀ ସହ ସଂପୃକ୍ତ । ପୁରୀରେ ଥିବା ସମାଧି ଗମ୍ଭୁଜକୁ କେହି କେହି ବଳରାମଙ୍କ ସାଧନାସ୍ଥଳ ରୂପେ ଚିହ୍ନିତ କରିଥାନ୍ତି । ବଟ ଅବକାଶ, ବେଦାନ୍ତସାର, ଗୁପ୍ତଗୀତା, ବ୍ରହ୍ମଗୀତା ଓ ଗୀତାବକାଶ ପ୍ରଭୃତିରେ ବର୍ଣ୍ଣିତ ଘଟଣାସବୁ ମୁକ୍ତିମଣ୍ଡପ ସହ ସଂପୃକ୍ତ । ଭାବସମୁଦ୍ର ଓ ଗୀତାବକାଶରେ କବିଙ୍କୁ ପଣ୍ଡାମାନେହିଁ ବିରୋଧ କରିଛନ୍ତି । ବଟ ଅବକାଶ ଓ ପଣସ ଚୋରୀରେ କବିଙ୍କର ଜଗନ୍ନାଥଙ୍କ ସହ ଲଙ୍କାଯାତ୍ରା ବା ପଣସ ଚୋରୀ କେବଳ ସମ୍ଭବ ହୋଇଛି । କବି ଜଗନ୍ନାଥଙ୍କ ପାଖରେ ପୁରୀରେ ଥିବା ହେତୁ ଏ ସବୁ ଗଳ୍ପରେ ଅଲୌକିକତାର ପୁଟ ରଞ୍ଜିତ ହୋଇ କବିଙ୍କ ମହିମା ପ୍ରଚାର କରାଯାଇଥିଲେ ହେଁ, କବି ଯେ ପୁରୀ ସହ ନିବିଡ଼ ଭାବେ ସଂଶ୍ଳିଷ୍ଟ ଥିଲେ, ଏହାହିଁ ସ୍ପଷ୍ଟ ହୋଇଥାଏ । ଏରବଙ୍ଗ, ସମଗରା, ସୁଆଣ୍ଡ ମଣୋହି ଓ ଯମରା ପ୍ରଭୃତି ସ୍ଥାନ ସହ କବିଙ୍କୁ ସଂପୃକ୍ତ କରାଯିବାର କାରଣ ହେଲା, କବିଙ୍କ ପ୍ରସିଦ୍ଧି । ଏ କଥା ମଧ୍ୟ ଅନୁମାନ କରାଯାଇପାରେ ଯେ କବି ଶେଷ ବୟସରେ କୌଣସି କାରଣରୁ ପୁରୀ ତ୍ୟାଗକରି ସମୟେ ସମୟେ ଏହି ସବୁ ସ୍ଥାନରେ ରହି ଶେଷ ବୟସରେ ଏରବଙ୍ଗ ନିକଟବର୍ତ୍ତୀ ବେଗୁନିଆ ଗ୍ରାମରେ ସମାଧିସ୍ଥ ହୋଇଥିଲେ ।

କେବଳ ବେଗୁନିଆସ୍ଥିତ ବଳରାମଙ୍କ ସମାଧି ନୁହେଁ, ପ୍ରଚଳିତ ଏକ କିମ୍ବଦନ୍ତୀରୁ କବି ଶେଷ ବୟସରେ ପୁରୀରେ ନଥିବା ଜଣାଯାଏ । ଶ୍ରୀ ଜଗବନ୍ଧୁ ସିଂହଙ୍କ ଦ୍ୱାରା ସଂଗୃହୀତ ଲୋକକଥା ହେଲା, "ଆହୁରି ଗୋଟିଏ ପ୍ରବାଦ ଅଛି ଯେ, ଦାସେ ଲକ୍ଷ୍ମୀଙ୍କୁ କାଣୀ ବୋଲି କହନ୍ତି । ଏହା ଶୁଣି ଲକ୍ଷ୍ମୀଙ୍କ ମନରେ ବଡ଼ କ୍ରୋଧ ହୋଇଥିଲା ଏବଂ ଲକ୍ଷ୍ମୀ ଶାପ ଦେଲେ ଯେ ଦାସେ କ୍ଷେତ୍ରଲାଭ କରିପାରିବେ ନାହିଁ । ଦାସେ ଶେଷ ଜୀବନ ପୁରୀ ଜିଲ୍ଲାନ୍ତର୍ଗତ ଏରବଙ୍ଗ ଗ୍ରାମରେ କଟାଇଥିଲେ । ସେଠାରେ ମୃତ୍ୟୁକାଳରେ ଜଗନ୍ନାଥଙ୍କୁ ସ୍ମରଣ କରିବାକୁ ଲକ୍ଷ୍ମୀ ସହିତ ପ୍ରଭୁ ସେ ସ୍ଥାନକୁ ବିଜେ କଲେ । ଦାସେକ କହିଲେ- କିଲୋ କାଣି, ଏବେ କ'ଣ ହେଲା ? ଲକ୍ଷ୍ମୀ ଉତ୍ତରଦେଲେ, କଣ ହେଲା ? ଏ କ'ଣ କ୍ଷେତ୍ର କି ? ଦାସେ କହିଲେ- କିଲୋ, କ୍ଷେତ୍ର ଆଉ କାହାକୁ କହନ୍ତି ? ତୁ ଯେଉଁଠି ସେ ଯେଉଁଠି କ୍ଷେତ୍ର ତ ସେହି । କ୍ଷେତ୍ର କେଉଁଠି ?" ଲକ୍ଷ୍ମୀ ନିରୁତ୍ତର ହେଲେ ।

ଲକ୍ଷ୍ମୀ ଓ ବଳରାମଙ୍କ ଏହି କୌତୁହଳପୂର୍ଣ୍ଣ କଥାବାର୍ତ୍ତା ପରେ କବି ବଳରାମ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ଏରବଙ୍ଗ ଗ୍ରାମର ଜନୈକ ଅଧିବାସୀ ଭାବଗଦ୍‌ଗଦ୍ କଣ୍ଠରେ ଏହି କଥାକୁ କିଞ୍ଚିତ ପରିବର୍ତ୍ତନ କରି କହନ୍ତି ଯେ, ସେ ଶେଷ ବୟସରେ ପୁରୀ ଯାଇ ନପାରିବାରୁ ଏରବଙ୍ଗଠାରେ ସିଦ୍ଧ ବଳଦେବ ମନ୍ଦିର ପ୍ରତିଷ୍ଠା କରି ସେଠାରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ପ୍ରତ୍ୟହ ଦର୍ଶନ କରୁଥିଲେ । ଦିନେ ପୁରୀ ଯିବାକୁ ମନସ୍ଥ କରି କିଛି ପଥ ଯିବାପରେ ତାଙ୍କର ଶେଷ ସମୟ ଉପସ୍ଥିତ ହୋଇଥିଲା ଓ ସେ ଏହା ଜାଣିପାରି ଜଗନ୍ନାଥଙ୍କୁ ସ୍ମରଣ କରିଥିଲେ । ଜଗନ୍ନାଥ ଲକ୍ଷ୍ମୀଙ୍କ ସହ ସେଠାରେ ଉପସ୍ଥିତ ହୋଇ କବିଙ୍କୁ ଶେଷ ଦର୍ଶନ ଦାନ କଲେ । ସେହିଠାରେ ଲକ୍ଷ୍ମୀ ଓ କବି ବଳରାମଙ୍କ ମଧ୍ୟରେ ଉପରୋକ୍ତ କଥାବାର୍ତ୍ତା ସମାହିତ ହୋଇଥିଲା ।

## ପିତାମାତା :

ଜଗମୋହନ ରାମାୟଣ, ଶ୍ରୀମଦ୍ ଭଗବତ୍ ଗୀତା, ବଟ ଅବକାଶ, ଭାବସମୁଦ୍ର ଓ ବ୍ରହ୍ମାଣ୍ଡ ଭୂଗୋଳ ପ୍ରଭୃତି ଗ୍ରନ୍ଥରେ କବି ନିଜକୁ ସୋମନାଥ ବା ସୋମନାଥ ମହାପାତ୍ରଙ୍କ ପୁତ୍ର ରୂପେ ଉଲ୍ଲେଖ କରିଛନ୍ତି: ।

"ସୋମନାଥ ମହାପାତ୍ର କୋଳେ ହୋଇଲି ସମ୍ଭୂତ
ଯହୁଂ ପିତା ମୋର ବିଷ୍ଣୁରେ ଭକତ,
ତେଣୁ ଜଗନ୍ନାଥ ଦୟା ମୋତେ କଲେ
ରାମାୟଣ ଗ୍ରନ୍ଥ ମୋ ମୁଖେ ବଖାଣିଲେ ।"

ଅନ୍ୟସ୍ଥାନରେ କୁହାଯାଇଛି,

'ମହା ମନ୍ତ୍ରୀବର ସୋମନାଥ ମହାପାତ୍ର
ବଳରାମ ଦାସ ମୁଂ ଯେ ତହାଙ୍କର ପୁତ୍ର'

ଶ୍ରୀମଦ୍ ଭଗବତ୍ ଗୀତାରେ ଅଛି,

"ମହାପାତ୍ର ସୋମନାଥ ତନୟେ
ବଳରାମ ଦାସ ଗୀତାରେ କହେ"

'ବ୍ରହ୍ମାଣ୍ଡ ଭୂଗୋଳ'ରେ ପିତାଙ୍କ ନାମ ଥିବା ପଦସବୁ ହେଲା-

(୧) କହଇ ସମନାଥ ସୁତ । ବ୍ରହ୍ମାଣ୍ଡ ଭୋଗୋଳର ଅର୍ଥ ।୧୦ମ ଅଧ୍ୟାୟ
(୨) କହଇ ସମନାଥ ସୁତ । ଉଧର ମୋତେ ପଦ୍ମନେତ୍ର ।୧୫ଶ ଅଧ୍ୟାୟ
(୩) ନିର୍ଗୁଣ ଅର୍ଥ ଯେ ବିଚାର । ଭଣେ ସମନାଥ କୁମର । ଷଷ୍ଠ ଅଧ୍ୟାୟ

'ବଟଅବକାଶ'ରେ କବି କହିଛନ୍ତି,

"ଯେଣୁକରି ମୋହର ଯେ ବଳିଲା ସାହସ,
ସୋମନାଥ ତନୟ ମୁଁ ବଳରାମ ଦାସ" ।୯।

'ଭାବସମୁଦ୍ର'ରେ ମଧ୍ୟ କବି ନିଜ ପିତାଙ୍କୁ ସ୍ମରଣ କରି କହିଛନ୍ତି,

"ସୋମନାଥ ମହାପାତ୍ର ତନୟେ
ବଳରାମ ଦାସ ଗୀତରେ ଗାଏ ।" ।୭୪୪।

ଏହିସବୁ ପଂକ୍ତିରେ କବି ନିଜ ପିତାଙ୍କ ସମ୍ପର୍କରେ ଦୁଇଟି ସୂଚନା ଦେଇଛନ୍ତି । ପ୍ରଥମଟି ହେଲା ସେ 'ମହା ମନ୍ତ୍ରୀବର' ଓ ଦ୍ୱିତୀୟଟି ହେଲା ସେ 'ବିଷ୍ଣୁରେ ଭକତ' । 'ପିତାଙ୍କ ସୁକୃତରୁ ପୁତ୍ର ହୋଏ ସୁଖୀ' ଅନୁଯାୟୀ କବି ପିତାଙ୍କ ବିଷ୍ଣୁଭକ୍ତି ଯୋଗୁଁ ରାମାୟଣର କବି ହେବାର ସୌଭାଗ୍ୟ ପାଇଥିଲେ ।

କବିଙ୍କ ଉପରୋକ୍ତ ଉକ୍ତିଚୟକୁ ଆଧାର କରି ପରବର୍ତ୍ତୀ ଯୁଗରେ କବିଙ୍କ ପିତାଙ୍କୁ ବହୁଭାବେ ଚିତ୍ରଣ କରାଯାଇଛି । 'ଛତ୍ରିଶ ଗୁପ୍ତଗୀତା' ନାମକ ଗ୍ରନ୍ଥରେ ସେ ହୋଇଛନ୍ତି, 'ପ୍ରତାପରୁଦ୍ରଙ୍କ ପାତ୍ର' ।

"ପ୍ରତାପରୁଦ୍ର ନାମେ ହେବ ରାୟ
କହଇ ତୋତେ ସେ କଳି ସମୟ ।
ସୋମନାଥ ନାମେ ପାତ୍ର ତାହାର
ଅନିରୁଦ୍ଧ ହେବ ତାହାର ପର ।"

'ଦାର୍ଢ୍ୟତା ଭକ୍ତି'ରେ ସେ ହେଲେ 'ମହନ୍ତ ସୋମନାଥ ।'

"ନାମ ତା ବଳରାମ ଦାସ
ମହନ୍ତ ସୋମନାଥ ଶିଷ୍ୟ ।"

ସୋମନାଥଙ୍କୁ ରାଜାଙ୍କର ପାତ୍ର ବା ମହନ୍ତ କହିବା ଫଳରେ ମୂଳ ଉକ୍ତିରେ ବିଶେଷ ପରିବର୍ତ୍ତନ ହୋଇନାହିଁ । 'ମହାମନ୍ତ୍ରୀ ବର' ମଧ୍ୟ ଜଣେ ରାଜକର୍ମଚାରୀ, ପାତ୍ର ମଧ୍ୟ ସେହିପରି । ମହନ୍ତମାନେ ମଧ୍ୟ ବିଷ୍ଣୁଭକ୍ତ । ଏହିପରି ଜଣେ ସୁଯୋଗ୍ୟ ପିତାଙ୍କର ପୁତ୍ର ଥିଲେ କବି ବଳରାମ ଦାସ ।

ପରବର୍ତ୍ତୀ ଯୁଗରେ ପିତାଙ୍କ ଗୁଣ ଓ ଉପାଧିରେ ପରିବର୍ତ୍ତନ କରାଯାଇଥିବାବେଳେ

ମାତାଙ୍କ ନାମକୁ ସମ୍ପୂର୍ଣ୍ଣ ରୂପେ ବଦଳେଇ ଦିଆଯାଇଥିଲା । ଉତ୍ତରା କାଣ୍ଡରେ ଥିବା ଉକ୍ତି ଅନୁଯାୟୀ ତାଙ୍କ ମାତାଙ୍କ ନାମ ଥିଲା 'ମନମାୟା' । "ମନମାୟା ନାମେ ଜନନୀର ଗର୍ଭୁ ଜନ୍ମ ହୋଇଣ ମୁଁ ଚିହ୍ନିଲି ମହାପ୍ରଭୁ ।" ଏ ନାମ ପ୍ରତି କବିଙ୍କର ବିଶେଷ ଶ୍ରଦ୍ଧା ଥିବାରୁ ସେ ସୀତାଙ୍କ ବିଶ୍ୱସ୍ତା ସଖୀଙ୍କ ନାମ ମଧ୍ୟ 'ମନମାୟା' ରଖିଥିଲେ । କିନ୍ତୁ 'ଛତ୍ରିଶ ଗୁପ୍ତଗୀତା'ରେ ଏହି ନାମ 'ଜମ୍ନୁ' ବା 'ଯମୁନା' ନାମରେ ଉଲ୍ଲିଖିତ ।

ଇତିହାସରୁ ପ୍ରତାପରୁଦ୍ରଙ୍କ ମନ୍ତ୍ରୀମାନଙ୍କ ନାମ ସମ୍ପର୍କରେ ବିଶେଷ ବିବରଣୀ ମିଳେ ନାହିଁ । ତେବେ ମହାପାତ୍ର ସାଙ୍ଗିଆ ଥିବା ଲୋକେ ଯେ ମନ୍ତ୍ରୀ ଥିଲେ, ଏହାର ପ୍ରମାଣ ମିଳେ କପିଳେନ୍ଦ୍ର ଦେବଙ୍କ ସମୟରେ । କପିଳେନ୍ଦ୍ରଙ୍କ ମନ୍ତ୍ରୀ ଗୋପୀନାଥ ମହାପାତ୍ର ଗୋପୀନାଥପୁରର ପ୍ରତିଷ୍ଠାତା ଥିଲେ । ପଣ୍ଡିତ ବିନାୟକ ମିଶ୍ରଙ୍କ ମତରେ ସେ ହେଉଛନ୍ତି, ସୋମନାଥ ମହାପାତ୍ରଙ୍କ ପୂର୍ବ ବଂଶଧର । ଅନ୍ୟ ପକ୍ଷରେ ଶ୍ରୀ ନଗେନ୍ଦ୍ର ନାଥ ବସୁ ସୋମନାଥ ମହାପାତ୍ରଙ୍କୁ 'ବାଉରୀ ଜାତୀୟ ମନ୍ତ୍ରୀ' ଭାବେ ଗ୍ରହଣ କରିଛନ୍ତି । ମୟୁରଭଞ୍ଜରେ ବସବାସ କରୁଥିବା ବାଉରୀ ମହାପାତ୍ରମାନଙ୍କର ବିଶ୍ୱାସ ଯେ ସେମାନଙ୍କର ପୂର୍ବପୁରୁଷମାନେ ରାଜମନ୍ତ୍ରୀ ହେବାର ସୁଯୋଗ ପାଉଥିଲେ । ପ୍ରତାପରୁଦ୍ରଙ୍କ ସମୟରୁ ସେମାନେ ଏହି ଅଧିକାରରୁ ବଞ୍ଚିତ ହେଲେ । କିନ୍ତୁ ଏସବୁ କେବଳ ଅନୁମାନ । ଏହାକୁ ପ୍ରମାଣ କରିବା ସମ୍ଭବ ନୁହେଁ ।

ମହାମନ୍ତ୍ରୀ ସୋମନାଥ ମହାପାତ୍ରଙ୍କ ତନୟ ହେଲେ ବି କବି ଥିଲେ ଜଣେ ସାଧାରଣ ବୈଷ୍ଣବ । ଭବାନନ୍ଦ ପଟ୍ଟନାୟକଙ୍କ ପୁତ୍ରମାନଙ୍କ ପରି ରାଜ୍ୟର ଗୁରୁଦାୟିତ୍ୱ ବହନ କରି ହରିନାମ ଜପରେ ସେ କାଳାତିପାତ କରୁନଥିଲେ । ହରିନାମ ଜପ କରିବା ପାଇଁ ସେ ପୈତୃକ ସମ୍ପଦ ପରିତ୍ୟାଗ କରି ଭିକ୍ଷାକୁ ଜୀବିକା ନିର୍ବାହର ଏକମାତ୍ର ଅବଲମ୍ବନ ରୂପେ ଗ୍ରହଣ କରିଥିଲେ । କବିଙ୍କ ଏହି ବେପରୁଆ ଭାବର ପରିଚୟ ମିଳେ ଈଶ୍ୱର ଦାସଙ୍କ 'ଚୈତନ୍ୟ ଭାଗବତ'ରୁ ସେ ବୈଷ୍ଣବ ଥିଲେ ବି କୌଣସି ନିର୍ଦ୍ଦିଷ୍ଟ ସମ୍ପ୍ରଦାୟକୁ ନିଜର କରିପାରିନଥିଲେ । ସେଥିପାଇଁ ଈଶ୍ୱର ଦାସ ଲେଖିଛନ୍ତି,

"ମାଳା ତିଳକ ଯାର ନାହିଁ
ସେ ପୁଣି ବୈଷ୍ଣବ ବୋଲାଇ"

ବୈଷ୍ଣବ ହୋଇ ରାଜସମ୍ପଦ ତ୍ୟାଗ କରିବା ଫଳରେ ତାଙ୍କର ପ୍ରସିଦ୍ଧି ଦେଶ ମଧ୍ୟରେ ଅତି ଶୀଘ୍ର ପ୍ରସାରିତ ହୋଇଥିଲା । ଏହାହିଁ ଥିଲା ଭାରତୀୟ ସଂସ୍କୃତିର ମହାନ

ଆଦର୍ଶ । ଦେଶର ମଙ୍ଗଳପାଇଁ ମାନବ ଜାତିର ଉଦ୍ଧାର ପାଇଁ ଶ୍ରୀରାମ ତ୍ୟାଗ କଲେ ଅଯୋଧ୍ୟା ନଗର । ବୁଦ୍ଧଦେବ ତ୍ୟାଗ କଲେ କପିଳବାସ୍ତୁର ରାଜସିଂହାସନ ଓ ଗୋବିନ୍ଦଚନ୍ଦ୍ର ପରିତ୍ୟାଗ କଲେ ଅନେଶ୍ୱତ ରାଣୀ ଓ ବଙ୍ଗଦେଶର ପ୍ରଭୁତ୍ୱ । ବଳରାମ ଥିଲେ ଏହି ମହାନ୍ ପଥର ବିଜୟୀ ପଥିକ । ଐଶ୍ୱର୍ଯ୍ୟକୁ ତୁଚ୍ଛକରି ସେ ହେଲେ ଦାଣ୍ଡର ଭିକାରୀ । ମନକୁ ନିର୍ମଳ କରି ଭଗବାନଙ୍କ ନାମ ଜପ କରିବା ପାଇଁ ଅନୁକୂଳ ପରିବେଶ ସୃଷ୍ଟି କରିବା କେବଳ ତ୍ୟାଗ ଦ୍ୱାରାହିଁ ସମ୍ଭବ । ଏଥିପାଇଁ କବିଙ୍କ ମନରେ ଆଦୌ ଦୁଃଖ ନଥିଲା; ବରଂ ଭଗବାନଙ୍କ ନିକଟରେ ସେ ନିଜ କଥା କହିବାବେଳେ ଭଗବାନଙ୍କ ଦାନ ପାଇଁ ସେ ନିଜର ଅସୀମ କୃତଜ୍ଞତା ଜଣାଇ କହିଛନ୍ତି,

> 'ଦାରା ସୁତ ଧନ ଜନ ସୁଖଭୋଗ ଶିରୀ,
> ଅଳପେ ଆପଣେ ଦେଇଅଛନ୍ତି ତା ହରି
> ସ୍ୱାମୀର ସେବକ ମୁଁ ସନ୍ନିଧେ ଖଟିଥାଇ
> ଏ ଭବସାଗରେ ମୋତେ କିଛି ଚିନ୍ତା ନାହିଁ ।'

## ପରିବାର :

କବି ବିଷ୍ଣୁଭକ୍ତ ଅର୍ଥାତ୍ ବୈଷ୍ଣବ ହେଲେ ବି ସନ୍ନ୍ୟାସୀ ନଥିଲେ । ସେ ସାଧାରଣ ଗୃହସ୍ଥ ପରି 'ଦାରା, ସୁତ, ଧନ, ଜନ, ଧରି କୁଟୁମ୍ବ ଜଞ୍ଜାଳରେ ବ୍ୟସ୍ତ ରହୁଥିଲେ । ଦାର୍ଢ୍ୟତା ଭକ୍ତିରେ ମଧ୍ୟ କବି 'କୁଟୁମ୍ବ ଘେନି ସଙ୍ଗତରେ' ରହୁଥିବା କଥା କୁହାଯାଇଛି । ଜଗନ୍ନାଥଙ୍କ କୃପାରୁ କବି 'ଅଳପକେ' ସନ୍ତୁଷ୍ଟ ରହୁଥିଲେ । କବିଙ୍କର ଭରସା ଥିଲେ ପୁରୀ ନଗରର କେତେକ ମହତଜନ । ଏଥିରୁ କବି ପରିବାର ସହ ସୁଖେ ଦୁଃଖେ ଚଳିଯାଉଥିବାର ସୂଚନା ମିଳୁଥିଲେହେଁ, କବି ଅପବାଦରୁ ମୁକ୍ତ ନଥିଲେ । ତାଙ୍କରି ନାଁରେ ଭଣିତା ହୋଇଥିବା 'ଦୀପ୍ତିସାର ଗୀତା, ବ୍ରହ୍ମକୁଣ୍ଡଳୀ, ଭାବ ସମୁଦ୍ର ଓ ଦୀପ୍ତିସାର ଗୀତାରେ ସେହି ବେଶ୍ୟାର ନାମ ଚାରୁ ରଖାଯାଇଛି ।

ଭାବସମୁଦ୍ର ଓ ଦାର୍ଢ୍ୟତାଭକ୍ତି ଅନୁଯାୟୀ କବି ସେହି ବେଶ୍ୟା ସହ ଥିବାବେଳେ ବଡ଼ଦାଣ୍ଡରେ ରଥଯାତ୍ରା ଉତ୍ସବ ଆରମ୍ଭ ହୁଏ । ଘଣ୍ଟ, ଘଣ୍ଟା ଓ କାହାଳୀ ନାଦରେ ବଡ଼ଦାଣ୍ଡ ଉଚ୍ଛୁଳି ପଡ଼େ । କବି ଏହି ଶବ୍ଦ ଶୁଣି କୁଙ୍କୁମ ଜରଜର ଦେହରେ ବଡ଼ଦାଣ୍ଡକୁ ଆସି ରଥ ଉପରେ ଆରୋହଣ କରନ୍ତି । ପଣ୍ଡା ଓ ପଢ଼ିଆରୀମାନେ କବିଙ୍କର ଏତାଦୃଶ ଅବସ୍ଥାରେ ହତଚକିତ ହୋଇ ତାଙ୍କୁ ରଥ ଉପରକୁ ଠେଲିଦିଅନ୍ତି । କବି ଅଭିମାନରେ ବାଲିଖଣ୍ଡକୁ

ଯାଇ ସେଠାରେ ବାଲିରେ ରଥ ନିର୍ମାଣ କରି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ସେଥିରେ ବିଜେ କରିବା ପାଇଁ ଅନୁରୋଧ କରନ୍ତି । ଭକ୍ତର ଅନୁରୋଧ ରକ୍ଷାକରି ଜଗନ୍ନାଥ ବାଲିରଥରେ ବିଜେ କରନ୍ତି । ବଡ଼ଦାଣ୍ଡରେ ରଥ ଅଚଳ ହୋଇଯାଏ । ଏହାପରେ ପଣ୍ଡା, ପଢ଼ିଆରୀମାନେ ନିଜର ଭୁଲ୍‌କୁ ହୃଦୟଙ୍ଗମ କରି ରାଜାଙ୍କ ସହ ଭକ୍ତ ବଳରାମଙ୍କ ନିକଟରେ ଉପସ୍ଥିତ ହୁଅନ୍ତି । ଭକ୍ତର ଅଭିମାନ ଦୂରହୁଏ ଓ ରଥଯାତ୍ରା କାର୍ଯ୍ୟ ପୁନର୍ବାର ଆରମ୍ଭ ହୁଏ ।

ଏହି ଗଳ୍ପରେ ଦୁଇଟି ତଥ୍ୟ ନିହିତ । ପ୍ରଥମ ହେଲା-ବଳରାମଙ୍କର ବେଶ୍ୟା ସମ୍ପର୍କ ଓ ଦ୍ୱିତୀୟଟି ହେଲା- ଭକ୍ତ ବଳରାମଙ୍କ ମହିମା ପ୍ରଚାର ।

ରସିକ କବିମାନଙ୍କୁ କୌଣସି ସୁନ୍ଦରୀ ନାରୀ ବିଶେଷକରି ବେଶ୍ୟା ସହ ସଂପୃକ୍ତ କରିବା ଏକ ପ୍ରାଚୀନ ଭାରତୀୟ ପରମ୍ପରା । କାଳିଦାସ, ସୁରଦାସ, ତୁଳସୀ ଦାସ, ବିଲ୍ୱମଙ୍ଗଳ ପ୍ରଭୃତି ଭାରତର ପ୍ରସିଦ୍ଧ କବିମାନେ ଏହି ଅପବାଦରୁ ମୁକ୍ତ ନୁହନ୍ତି । ପୁଣି ଷୋଡ଼ଶ ଶତାବ୍ଦୀରେ ପ୍ରସିଦ୍ଧିଲାଭ କରିଥିବା ସନ୍ଥ ଓ ବୈଷ୍ଣବମାନଙ୍କର ଏହିପରି ଗୋଟିଏ ଗୋଟିଏ ସାଧନା-ସଙ୍ଗିନୀ ଥିବା ସହଜମାର୍ଗୀ ବୈଷ୍ଣବମାନଙ୍କ ଗ୍ରନ୍ଥରୁ ଉପଲବ୍ଧ ହୁଏ । ସେମାନେ ଶ୍ରୀଚୈତନ୍ୟ, ରାମାନନ୍ଦ ରାୟ, ଜଗନ୍ନାଥ ଦାସ, ରୂପଗୋସ୍ୱାମୀ ଓ ଜୀବଗୋସ୍ୱାମୀଙ୍କ ସାଧନା-ସଙ୍ଗିନୀ ଭାବେ କୌଣସି ନା କୌଣସି ନାରୀର ଉଲ୍ଲେଖ କରିଥାନ୍ତି । ବଳରାମଙ୍କ ସହ ଚାରୁ ବେଶ୍ୟାକୁ ଯୋଡ଼ିବା ମୂଳରେ ଏହିପରି ଏକ ଉଦ୍ଭଟ କଳ୍ପନା କାମ କରିଥିବା ଅସମ୍ଭବ ନୁହେଁ ।

ଏହି ଗଳ୍ପର ଅନ୍ୟତମ ଉଦ୍ଦେଶ୍ୟ ହେଲା ଭକ୍ତର ମହିମା ପ୍ରଚାର । ଭକ୍ତ ନିକଟରେ ପବିତ୍ର ଓ ଅପବିତ୍ରର ପ୍ରଶ୍ନ ନାହିଁ । ସେ ଯେଉଁ ଅବସ୍ଥାରେ ଥିଲେ ବି ଭଗବାନ ସବୁବେଳେ ଭକ୍ତ ଅଧୀନ । ପଣ୍ଡା ଓ ପଢ଼ିଆରୀଙ୍କ ତଥାକଥିତ ପବିତ୍ରତା ଉପରେ ଏହା ହେଲା ଭକ୍ତମାନଙ୍କର ପ୍ରଚଣ୍ଡ ଅଭିଯୋଗ । ଜଗମୋହନ ରାମାୟଣର ଲଙ୍କାକାଣ୍ଡରେ ସେଥିପାଇଁ ବଳରାମ ସୁଗ୍ରୀବ, ବିଭୀଷଣ ଓ ହନୁମାନଙ୍କ ପରି ଶ୍ରୀରାମଙ୍କ ଭକ୍ତମାନଙ୍କର ପଦରଜକୁ ବଶିଷ୍ଠଙ୍କ ଯଜ୍ଞଠାରୁ ଶ୍ରେଷ୍ଠ ଭାବେ ଘୋଷଣା କରିଛନ୍ତି । ଏହି ଗଳ୍ପ ମୂଳରେ ବଳରାମଙ୍କର ବ୍ରାହ୍ମଣମାନଙ୍କ ପ୍ରତି ବିରୋଧ ଭାବନା ହିଁ ପ୍ରକଟିତ ।

ବଳରାମଙ୍କୁ ବେଶ୍ୟା ସହ ସଂପୃକ୍ତ କରିବାର ଅନ୍ୟତମ କାରଣ ରୂପେ ଜଗମୋହନ ରାମାୟଣର ବେଶ୍ୟା ବର୍ଣ୍ଣନାକୁ ଗ୍ରହଣ କରାଯାଇପାରେ । ରମ୍ଭା, ଉର୍ବଶୀ, ମେନକା ଇରତା

ଓ କାମମୋହିନୀ ପ୍ରଭୃତି ବେଶ୍ୟାଙ୍କ ପ୍ରସଙ୍ଗ ବର୍ଣ୍ଣନା କଲାବେଳେ ବଳରାମ ଯେପରି ଆତ୍ମବିଭୋର ହୋଇପଡ଼ିଛନ୍ତି, ସେଥିରୁ ବେଶ୍ୟାମାନଙ୍କ ପ୍ରତି କବିଙ୍କର ବିଶେଷ ଆସକ୍ତି ଥିବା ଅନୁମାନ କରାଯାଇପାରେ । ହିନ୍ଦୀ ସାହିତ୍ୟରେ ବିଶିଷ୍ଟ କବି କେଶବ ଦାସଙ୍କ ବେଶ୍ୟା ପ୍ରୀତିରୁ ହିଁ 'ରସିକ ପ୍ରିୟା' ଓ 'କବି ପ୍ରିୟା' ଗ୍ରନ୍ଥଦ୍ୱୟର ସୃଷ୍ଟି ।

କବିଙ୍କ ସମ୍ପର୍କରେ ରଚିତ କେତେକ ଗ୍ରନ୍ଥ ଏପରିକି କବିଙ୍କ ଭଣିତା ଥିବା ଗ୍ରନ୍ଥରେ ଏପରି ଉଲ୍ଲେଖ ଦେଖିବାକୁ ମିଳୁଥିଲେ ହେଁ, କବି ନିଜର ସାଧନା ଓ ଭକ୍ତିମତ୍ତା ବଳରେ ଏ ସବୁକୁ ଅତିକ୍ରମ କରି ଜଗନ୍ନାଥଙ୍କ ପରମ ଭକ୍ତ ରୂପେ ସମାଜରେ ପରିଚିତ ହୋଇଥିଲେ ।

## ପଞ୍ଚସଖା ଓ ବଳରାମ :

ଓଡ଼ିଶାରେ ବଳରାମ, ଅନ୍ୟ ଚାରିଜଣ ମହାପୁରୁଷ ଅର୍ଥାତ୍ ଅଚ୍ୟୁତ, ଅନନ୍ତ, ଯଶୋବନ୍ତ ଓ ଜଗନ୍ନାଥଙ୍କ ସଖା ଭାବରେ ପରିଚିତ । ଏପରିକି ଓଡ଼ିଶାର କେତେକ ସ୍ଥାନରେ ପଞ୍ଚସଖାମାନେ ମିଳିତ ହୋଇ ଶାସ୍ତ୍ର ଆଲୋଚନା କରୁଥିବା କଥା ଲୋକମୁଖରେ ପ୍ରଚାରିତ । ସୁଦର୍ଶନ ଦାସଙ୍କ ରଚିତ 'ଚଉରାଶି ଆଜ୍ଞା' ପୁସ୍ତକରେ ଏହିପରି ଏକ ଗଳ୍ପ ଦେଖିବାକୁ ମିଳେ । ସେଥିରୁ ଜଣାଯାଏ ଯେ ପଞ୍ଚସଖାମାନେ ଦିନେ ଶ୍ରୀଚୈତନ୍ୟ ଓ ପ୍ରତାପରୁଦ୍ରଙ୍କ ସମ୍ମୁଖରେ ପଣସ ମଞ୍ଜିରୁ, ବୃକ୍ଷ, ଶାଖା ଓ ଫଳ ସୃଷ୍ଟିକରି ନିଜ ନିଜର ସିଦ୍ଧିର ପରୀକ୍ଷା ଦେଇଥିଲେ । ଶୂନ୍ୟ ସଂହିତାରେ ମଧ୍ୟ ଏପରି ଏକ ଗଳ୍ପ ଲିପିବଦ୍ଧ । ପଞ୍ଚସଖାଙ୍କ ସାଧନା ମାର୍ଗ, ମନ୍ତ୍ର, ସମ୍ପ୍ରଦାୟ ପ୍ରଭୃତିର ଉଲ୍ଲେଖ କଲାବେଳେ ମଧ୍ୟ ସେମାନଙ୍କୁ ପରସ୍ପର ସହ ସଂପୃକ୍ତ କରାଯାଇଛି । ଈଶ୍ୱର ଦାସଙ୍କ ଚୈତନ୍ୟ ଭାଗବତରେ ସେମାନେ କଟକରେ ଅନୁଷ୍ଠିତ ହେଉଥିବା ପ୍ରତାପରୁଦ୍ରଙ୍କ ଦ୍ୱାରା ଆୟୋଜିତ ମହୋତ୍ସବରେ ମିଳିତ ହୋଇଥିବାର ସୂଚନା ମିଳେ । ଏହିପରି ଭାବେ ଷୋଡ଼ଶ ଶତାବ୍ଦୀର ପଞ୍ଚମହାପୁରୁଷଙ୍କୁ ପଞ୍ଚସଖା ଭାବେ ବାରମ୍ବାର ସମ୍ମାନିତ କରାଯାଇଥିଲେ ହେଁ, ଏହାକୁ ଐତିହାସିକ ଦୃଷ୍ଟିକୋଣରୁ ପ୍ରମାଣିତ କରିବା ସହଜ ନୁହେଁ । ଦିବାକର ଦାସ ଜଗନ୍ନାଥ 'ଚରିତାମୃତ' ଗ୍ରନ୍ଥରେ ବଳରାମଙ୍କୁ ଜଗନ୍ନାଥ ଦାସଙ୍କ ଗୁରୁରୂପେ ଉଲ୍ଲେଖ କରିଛନ୍ତି । ବଳରାମ ମଧ୍ୟ 'ବ୍ରହ୍ମାଣ୍ଡ ଭୂଗୋଳ' ଗ୍ରନ୍ଥରେ ଜଗନ୍ନାଥ ଦାସଙ୍କ ଭାଗବତର ଏକାଦଶ ସ୍କନ୍ଧରୁ କେତେକ ପଂକ୍ତିର ବ୍ୟାଖ୍ୟା ପ୍ରଦାନ କରି ଜଗନ୍ନାଥ ଦାସଙ୍କ ପ୍ରତି ନିଜର ସମ୍ମାନ ପ୍ରଦର୍ଶନ କରିଛନ୍ତି ।

ଜନୈକ ଜଗନ୍ନାଥ ଦାସଙ୍କ ରଚିତ 'ଭକ୍ତି ଚନ୍ଦ୍ରିକା'ରେ ବଳରାମଙ୍କର ଷୋଳ ଶିଷ୍ୟ ଥିବାର ଉଲ୍ଲେଖ ମିଳେ । ବଳରାମଙ୍କ ପରବର୍ତ୍ତୀ ଦ୍ୱାରକା ଦାସ, ବାଳିଙ୍ଗା ଦାସ ଓ କୃଷ୍ଣ ଦାସ ପ୍ରଭୃତି କବି ନିଜକୁ ବଳରାମଙ୍କ ସହ ସଂପୃକ୍ତ କରିଛନ୍ତି । ଏହିପରି କେତେକ ଉଲ୍ଲେଖ ବ୍ୟତୀତ ବଳରାମଙ୍କ ବନ୍ଧୁବାନ୍ଧବଙ୍କ ସମ୍ପର୍କରେ ବିଶେଷକିଛି ଉପାଦାନ ଉପଲବ୍ଧ ହୁଏନାହିଁ ।

ବେଦାନ୍ତସାର ଗୁପ୍ତଗୀତା, ଶୂନ୍ୟସଂହିତା, ଚଉରାଶୀ ଆଜ୍ଞା, ଜଗନ୍ନାଥ ଚରିତାମୃତ, ଜ୍ୟୋତିଷ ବଳରାମଙ୍କ ଅମରକୋଷ ଗୀତା, ଚୈତନ୍ୟ ଭାଗବତ ଓ ଅନ୍ୟ କେତେକ ଗ୍ରନ୍ଥରେ ବଳରାମଙ୍କୁ ଶ୍ରୀଚୈତନ୍ୟଙ୍କ ସହ ସଂପୃକ୍ତ କରାଯାଇଛି । ଶ୍ରୀଚୈତନ୍ୟ ଓ ବଳରାମ ଉଭୟେ ଷୋଡ଼ଶ ଶତାବ୍ଦୀର ବିଶିଷ୍ଟ ବ୍ୟକ୍ତି । ପୁଣି ଉଭୟେ ଥିଲେ ପୁରୀବାସୀ । ଏପରି ସ୍ଥଳେ ସେମାନେ ପରସ୍ପର ସହ ପରିଚିତ ହୋଇଥିବା ଅସମ୍ଭବ ନୁହେଁ । ଶ୍ରୀଚୈତନ୍ୟଙ୍କ ଆଦେଶରେ ହିଁ ବଳରାମ ଜଗନ୍ନାଥ ଦାସଙ୍କ ଗୁରୁ ହେବାର ସୌଭାଗ୍ୟ ଲାଭ କରିଥିଲେ ।

ଗଜପତି ପ୍ରତାପରୁଦ୍ରଙ୍କ ସହ ବଳରାମଙ୍କ ସଂପର୍କରେ ଦୁଇପ୍ରକାର ଚିତ୍ର ମିଳେ । ପ୍ରତାପରୁଦ୍ର ବହୁ ସମୟରେ ବେଦାନ୍ତ ସାର ଗୁପ୍ତ ଗୀତା, ଚଉରାଶୀ ଆଜ୍ଞା, ବ୍ରହ୍ମ ଗୀତା, ଗୀତାବକାଶ, ବ୍ରହ୍ମକୁଣ୍ଡଳୀ ପ୍ରଭୃତି ଗ୍ରନ୍ଥର ବିବରଣୀ) ବଳରାମଙ୍କ ସିଦ୍ଧି ଓ ସାଧନାର ପରୀକ୍ଷା କରିଥିଲେହେଁ, କବିଙ୍କୁ ଅନେକ କ୍ଷେତ୍ରରେ (ଚୈତନ୍ୟ ଭାଗବତ, ଭାବସମୁଦ୍ର, ବେଦାନ୍ତସାର ଗୁପ୍ତଗୀତା) ସମ୍ମାନିତ କରିଥିଲେ । ଜଗନ୍ନାଥଙ୍କ ଭକ୍ତ ଓ ସେବକ ଭାବେ କବିଙ୍କର ପ୍ରସିଦ୍ଧି ସମାଜରେ ପ୍ରଚାରିତ ହେବାପରେ ଗଜପତି ପ୍ରତାପରୁଦ୍ର ତାଙ୍କୁ ସମ୍ମାନ ପ୍ରଦର୍ଶନ କରିଥିବା ଅନୁମାନ କରାଯାଇପାରେ ।

ବଳରାମ ନିଜର ସିଦ୍ଧି, ସାଧନା, ଭକ୍ତି ଓ କବିତ୍ୱ ବଳରେ ଷୋଡ଼ଶ ଶତାବ୍ଦୀର ଜଣେ ଶ୍ରେଷ୍ଠ ପୁରୁଷ ଭାବେ ଯେ ସମ୍ମାନିତ ହେଉଥିଲେ, ଏହାର ପ୍ରମାଣ ମିଳେ ଦେବକୀ ନନ୍ଦନଙ୍କ ବୈଷ୍ଣବ ବନ୍ଦନାରୁ । ଦେବକୀନନ୍ଦନ ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ବଳରାମଙ୍କ ସମ୍ପର୍କରେ ଲେଖିଛନ୍ତି,

ବନ୍ଦ ଉଡ଼ିଆ ବଳରାମ ଦାସ ମହାଶୟ
ଜଗନ୍ନାଥ ବଳରାମ ଯାର ବଶ ହୟ ।

**ଜାତି :**

କବି ଜାତିରେ ଶୂଦ୍ର ଥିବା ଜଣାଯାଏ । ଲଙ୍କାକାଣ୍ଡରେ କବି ନିଜ ଜାତି ସମ୍ପର୍କରେ କହିଛନ୍ତି-

"ମୁହିଁ ହୀନ ପାପୀ ବିଶେଷେ ଶୂଦ୍ର ଯୋନି ।

କବି ଶୂଦ୍ର ଜାତିରେ ଜନ୍ମଗ୍ରହଣ କରି ବେଦ, ବେଦାନ୍ତ, ଗୀତା, ଭାଗବତ, ଉପନିଷଦ ଓ ପୁରାଣ ସାହିତ୍ୟରେ ଅଗାଧ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ସେ ପର୍ଯ୍ୟନ୍ତ ଏସବୁ ଗ୍ରନ୍ଥର ଅଧ୍ୟୟନ, ଅଧ୍ୟାପନା ଓ ଆଲୋଚନା କରିବାର ଅଧିକାର କେବଳ ବ୍ରାହ୍ମଣମାନଙ୍କର ଥିଲା । ସେଥିପାଇଁ ବଳରାମଙ୍କୁ ବ୍ରାହ୍ମଣମାନେ ପ୍ରବଳ ବିରୋଧ କରୁଥିଲେ ଓ ସୁଯୋଗ ଉଣ୍ଡି ରାଜାଙ୍କ ନିକଟରେ ଅଭିଯୋଗ କରୁଥିଲେ । 'ଗୀତାବକାଶ' 'ବ୍ରହ୍ମଗୀତା' 'ବେଦାନ୍ତସାର ଗୁପ୍ତଗୀତା,' 'ବଟ ଅବକାଶ', 'ପଣସ ଚୋରୀ', 'ଭାବସମୁଦ୍ର' ଓ 'ଦୀପ୍ତିସାର ଗୀତା' ପ୍ରଭୃତି ଗ୍ରନ୍ଥରେ ବଳରାମ-ବିରୋଧି ବ୍ରାହ୍ମଣମାନଙ୍କ କାହାଣୀହିଁ କୁହାଯାଇଛି । ଜଗନ୍ନାଥଙ୍କ ଅସୀମ କରୁଣା ଯୋଗୁଁ କବି ପ୍ରତ୍ୟେକ ଥର ବ୍ରାହ୍ମଣମାନଙ୍କୁ ଅପମାନିତ କରି ଜୟଯୁକ୍ତ ହୋଇଛନ୍ତି । ୨

'ବେଦାନ୍ତସାର ଗୁପ୍ତଗୀତା'ରେ ବ୍ରାହ୍ମଣମାନେ ବଳରାମଙ୍କୁ ଅପମାନିତ କରିବାକୁ ଯାଇ ଯେତେବେଳେ କହିଥିଲେ,

ତୁ ସୋମନାଥ ଶୂଦ୍ର ସୁତ
ତୁ କହୁ ବେଦାନ୍ତ ଚରିତ ।

ସେତେବେଳେ କବି ଦବି ନଯାଇ ଜଡ଼ ହରିଦାସ ମୁଖରୁ ସମସ୍ତଙ୍କୁ ବେଦାନ୍ତ ଶୁଣାଇ ଚମତ୍କୃତ କରିଥିଲେ । ସେହିପରି ଗୀତା ଆଲୋଚନା ଶୁଣିବାକୁ ଯାଇ ସେ ବ୍ରାହ୍ମଣମାନଙ୍କ ଦ୍ୱାରା ଅପଦସ୍ତ ହୋଇ ଶ୍ରୀମଦ୍ ଭଗବଦ୍‌ଗୀତା ଅନୁବାଦ କରି ନିଜର ବିଦ୍‌ବତ୍ତାର ପରିଚୟ ଦେଇଥିଲେ । ବ୍ରହ୍ମଗୀତାରେ ସେହିପରି ସେ ବ୍ରହ୍ମବିଦ୍ୟା ଆଲୋଚନା

କରି ଏ ବିଷୟରେ ବ୍ରାହ୍ମଣମାନଙ୍କ ସାର୍ବଭୌମତ୍ୱରେ ଆଘାତ କରିଥିଲେ । ଏହିପରି ଜୀବନରେ ବହୁ ସଂଘର୍ଷକୁ ଅତିକ୍ରମ କରି ଶେଷରେ ସେ ହେଲେ ବ୍ରାହ୍ମଣ ଜଗନ୍ନାଥଙ୍କର ଗୁରୁ ଏବଂ ଦେଶର ଅନ୍ୟତମ ଶ୍ରେଷ୍ଠ ଗ୍ରନ୍ଥ ଜଗମୋହନ ରାମାୟଣର ପ୍ରସିଦ୍ଧ କବି ।

## ଆବିର୍ଭାବ ଓ ତିରୋଧାନର ସମୟ :

ବଳରାମଙ୍କ ଆବିର୍ଭାବ ଓ ତିରୋଧାନ କାଳ ସମ୍ପର୍କରେ ଆଲୋଚକମାନେ ଅଦ୍ୟାବଧି କୌଣସି ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇପାରି ନାହାନ୍ତି । ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ମତରେ କବି ୧୪୭୫ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ପଣ୍ଡିତ ସୂର୍ଯ୍ୟନାରାୟଣ କବିଙ୍କ ଆବିର୍ଭାବ କାଳ ପାଇଁ ତିନୋଟି ବର୍ଷର ଉଲ୍ଲେଖ କରିଛନ୍ତି । ସେ ସବୁ ହେଲା- ୧୪୭୩, ୧୪୮୭ ଓ ୧୪୮୪ । ଏ ପ୍ରସଙ୍ଗରେ କୃଷ୍ଣ ଦାସଙ୍କ ରଚିତ 'ଆଗତ ଭବିଷ୍ୟ ମାଳିକା'ର ଉକ୍ତିକୁ ବିଚାର କରାଯାଇପାରେ । ତଦନୁଯାୟୀ କବି ବଳରାମ ପ୍ରତାପରୁଦ୍ରଙ୍କ ୧୦ଅଙ୍କ ବେଳକୁ କବି ଭାବରେ ପ୍ରସିଦ୍ଧି ଲାଭ କରିସାରିଥିଲେ । ପ୍ରତାପରୁଦ୍ରଙ୍କ ୧୦ଅଙ୍କ ହେଲା ୧୫୦୫ ଖ୍ରୀଷ୍ଟାବ୍ଦ । ଯଦି ଅନୁମାନ କରାଯାଏ ଯେ କବି ଏତେବେଳକୁ ଜଗମୋହନ ରାମାୟଣ ରଚନା କରିସାରିଥିଲେ, ତା'ହେଲେ କବିଙ୍କୁ ସେତେବେଳକୁ ପ୍ରାୟ ବତିଶ ବର୍ଷ ହୋଇଥିଲା । ଏହି ହିସାବରେ କବିଙ୍କ ଜନ୍ମ ସମୟ ୧୪୭୩ ଖ୍ରୀଷ୍ଟାବ୍ଦ ବୋଲି ଅନୁମାନ କରାଯାଇପାରେ । ଏହି ଅନୁମାନ ଈଶ୍ୱର ଦାସଙ୍କ ଚୈତନ୍ୟ ଭାଗବତ ଦ୍ୱାରା କେତେକାଂଶରେ ସମର୍ଥିତ ହୋଇଥାଏ । ଚୈତନ୍ୟ ଭାଗବତରୁ ଜଣାଯାଏ ଯେ କବି କଟକରେ ଅନୁଷ୍ଠିତ ହୋଇଥିବା ମହୋତ୍ସବରେ ଉପସ୍ଥିତ ଥିଲେ । ଏହାର ସମୟ ୧୫୧୬ ଖ୍ରୀଷ୍ଟାବ୍ଦ । ସେତେବେଳେ କବିଙ୍କୁ ରାମାୟଣ ଓ ଶ୍ରୀମଦ୍ ଭଗବଦ୍ ଗୀତାର କବି ଭାବେ ସମ୍ମାନିତ କରାଯାଇଥିଲା । ଏହିସବୁ ଉଲ୍ଲେଖ ଉପରେ ନିର୍ଭର କରି କବି ୧୪୭୩ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିବା ଆପାତତଃ ଅନୁମାନ କରାଯାଇପାରେ ।

କବିଙ୍କ ତିରୋଧାନ ସମ୍ପର୍କରେ ମଧ୍ୟ କୌଣସି ନିର୍ଦ୍ଦିଷ୍ଟ ସମୟରେ ସୂଚନା ମିଳେ ନାହିଁ । କିମ୍ବଦନ୍ତୀରୁ ଜଣାଯାଏ ଯେ, କବି ଅକ୍ଷୟତୃତୀୟା ଦିନ ଇହଧାମ ତ୍ୟାଗ କରିଥିଲେ । ବେଗୁନିଆ ଗ୍ରାମ ନିକଟବର୍ତ୍ତୀ ସମାଧି ପୀଠରେ ଏହି ଦିନ ଏକ ମେଳା ଅନୁଷ୍ଠିତ ହୁଏ । କବିଙ୍କ ସ୍ୱନାମଧନ୍ୟ ଶିଷ୍ୟ ଭାଗବତ ପ୍ରଣେତା ଜଗନ୍ନାଥ ଦାସଙ୍କର ୬୦ ବର୍ଷରେ ତିରୋଭାବ ହୋଇଥିବା ଜଗନ୍ନାଥ ଚରିତାମୃତରୁ ଜଣାଯାଏ । କବି ଜଗନ୍ନାଥଙ୍କ ଆବିର୍ଭାବ କାଳ ୧୪୯୮ ଖ୍ରୀଷ୍ଟାବ୍ଦ । ତେଣୁ ତାଙ୍କର ତିରୋଧାନ କାଳ ୧୫୫୮ ଖ୍ରୀଷ୍ଟାବ୍ଦ । ଲୋକେ

କହନ୍ତି, ଏକାଦଶ ସ୍କନ୍ଧ ହିଁ କବିଙ୍କ ଶେଷ ରଚନା । ଏହି ଏକାଦଶ ସ୍କନ୍ଧର କେତେକ ପଂକ୍ତିକୁ ଗ୍ରହଣ କରି ବଳରାମ ତାଙ୍କର 'ବ୍ରହ୍ମାଣ୍ଡ ଭୂଗୋଳ' ରଚନା କଲେ । ତେଣୁ ଅନୁମାନ କରାଯାଇପାରେ ଯେ ବଳରାମ ୧୫୫୮ ଖ୍ରୀଷ୍ଟାବ୍ଦର ପରବର୍ତ୍ତୀ କାଳରେ ତାଙ୍କ ମର ଶରୀର ତ୍ୟାଗ କରିଥିଲେ । ତେବେ କୌଣସି ନିର୍ଦ୍ଦିଷ୍ଟ ସମୟ ଦେବା ସମ୍ଭବ ନୁହେଁ । ପ୍ରତାପରୁଦ୍ର, ଶ୍ରୀଚୈତନ୍ୟ ଓ ଜଗନ୍ନାଥ ଦାସଙ୍କ ମୃତ୍ୟୁ ଜନିତ ଦୁଃଖରେ ବ୍ୟଥିତ ହୋଇ କବି ପୁରୀ ତ୍ୟାଗ କରି ଏକବରଙ୍ଗଠାରେ ଶେଷ ସମୟ ଅତିବାହିତ କରିଥିବା ବିଶେଷ ସମ୍ଭବ ।

ମାଧବ ପଟ୍ଟନାୟକ ରଚିତ 'ବୈଷ୍ଣବ ଲୀଳାମୃତ' ଅନୁଯାୟୀ ବଳରାମ ଖ୍ରୀ: ୧୫୩୩ ଫାଲ୍‌ଗୁନ ଶୁକ୍ଳ ଦଶମୀରେ ଭଜନ କୀର୍ତ୍ତନ କରୁ କରୁ ପୁରୀଠାରେ ଦେହତ୍ୟାଗ କରିଥିଲେ । ଶ୍ରୀଚୈତନ୍ୟଙ୍କ ତିରୋଧାନ ପ୍ରାୟ ୫୩ ଦିନ ପୂର୍ବରୁ ବଳରାମ ଦେହତ୍ୟାଗ କରିଥିବା ମାଧବ ପଟ୍ଟନାୟକ ଉଲ୍ଲେଖରୁ ଜଣାଯାଏ । 'ବୈଷ୍ଣବ ଲୀଳାମୃତ'ର ରଚନାକାଳ ୧୫୩୫ ଖ୍ରୀଷ୍ଟାବ୍ଦ । ଏଥିରେ ଦିନ, ପକ୍ଷ, ମାସ ଓ ବର୍ଷର ଉଲ୍ଲେଖ୍ ଆଖିଦେଖା କଥା ପରି ଲେଖାଯାଇଛି । ତେବେ ବି ଏହା ପ୍ରମାଣସାପେକ୍ଷ ।

## ଭକ୍ତ ବଳରାମ :

> ମାଳା ତିଳକ ଯାର ନାହିଁ
> ସେ ପୁଣି ବୈଷ୍ଣବ ବୋଲାଇ (ଚୈତନ୍ୟ-ଭାଗବତ-ଈଶ୍ୱର ଦାସ)

ଅଷ୍ଟାଦଶ ଶତାବ୍ଦୀରେ ଏହା ହିଁ ଥିଲା ବଳରାମଙ୍କର ପ୍ରସିଦ୍ଧି । ବଳରାମ ତାଙ୍କ ଜୀବନ କାଳରେ ବୈଷ୍ଣବମାନଙ୍କର ମାଳା, ତିଳକ ଓ ଅନ୍ୟାନ୍ୟ ବାହ୍ୟାଚାରର ବିରୋଧ କରିଥିଲେ । କେବଳ ବୈଷ୍ଣବ ନୁହନ୍ତି, ସେ ସମୟରେ ପ୍ରଚଳିତ ପ୍ରାୟ ସବୁପ୍ରକାର ସମ୍ପ୍ରଦାୟ ତାଙ୍କ ଆଲୋଚନାର ଶରବ୍ୟ ଥିଲେ । ଭାରତର ପ୍ରସିଦ୍ଧ ଗୁରୁ କବୀର ମଧ ମାଳା-ତିଳକ-ଧାରୀ ବୈଷ୍ଣବମାନଙ୍କୁ ପରିହାସ କରୁଥିଲେ । କେବଳ କବୀର ଓ ବଳରାମ ନୁହନ୍ତି, ଅଚ୍ୟୁତ, ଅନନ୍ତ, ଯଶୋବନ୍ତ ଓ ଜଗନ୍ନାଥଙ୍କ ପରି ଷୋଡ଼ଶ ଶତାବ୍ଦୀର ସବୁ ସାଧକ ଗୋଟିଏ ସ୍ୱରରେ ସାଧକମାନଙ୍କର ଅଯଥା ଆଡ଼ମ୍ବରକୁ ଘୃଣା କରୁଥିଲେ । ବଳରାମ 'ବ୍ରହ୍ମାଣ୍ଡ ଭୂଗୋଳ'ରେ ଧର୍ମ ନାମରେ ସାଧାରଣ ଜନତାକୁ ପ୍ରତାରିତ କରୁଥିବା ବିଭିନ୍ନ ପ୍ରକାର ସାଧକଙ୍କୁ ନିନ୍ଦା କରି ଲେଖିଛନ୍ତି,

ସାକ୍ଷୀ ଶବଦ ଶିଖିଥାନ୍ତି । ପ୍ରାଣୀକି ଦେଖିଲେ ପଢ଼ନ୍ତି ।
ଦୂହାରେ କେ ତାହା ଶିଖିଣ । ମିଛେହେଁ କହୁଥାନ୍ତି ଟାଣ ।
କେ ଅବା ଶ୍ଲୋକ ସ୍ତୁତି କରେ । ଭଣ୍ଡାଉଥାନ୍ତି ନାନାକାରେ ।
ଗୀତା କବିତା ଯନ୍ତ୍ର ଜାଣି । ନାନା ପ୍ରକାରେ ବିଦ୍ୟାବାଣୀ ।
କେ ଅବା ସଂସାର ସାଗରେ । ବୈଷ୍ଣବ ବେଶ ନିରନ୍ତରେ ।
ମାଳା ତିଳେଖ ଧରିଥାନ୍ତି । ବିଅର୍ଥେ ସଂସାରେ ଭ୍ରମନ୍ତି ।
ଜଟା ବିଭୂତି କେ ଭୂଷଣ । କେ ଫଳ ଆହାର କରିଣ ।
କେ ବ୍ରତ ବାର ନିଅମରେ । କେ ତୀର୍ଥ ସାଗରକୁ ଗଲେ ।
କେ ନାନା ତୀର୍ଥରେ ଭ୍ରମଇ । କେବା ନିଶୋହା ହୋଇ ରହି ।
କପିଳ ବାସ କେ କର୍ପାସ । କେ ଉର୍ଧରେଣ ବନବାସ ।

ଏମାନେ ସମସ୍ତେ ଅସତ୍ୟ । ସଂସାରରେ ଏକମାତ୍ର ସତ୍ୟ ହେଉଛି, 'ଜ୍ଞାନୀ ନିର୍ଗୁଣ' । ଅଚ୍ୟୁତାନନ୍ଦ 'ଚାରିଖାନି'ରେ, ଜଗନ୍ନାଥ 'ନାରଦ ସଂହିତା'ରେ ଯଶୋବନ୍ତ, 'ଗୋବିନ୍ଦ ଚନ୍ଦ୍ର ଓ ଆତ୍ମପରତେ ଗୀତା'ରେ ଓ ଶିଶୁ ଅନନ୍ତ 'ବ୍ରହ୍ମ ପାର୍ଥିବ ତତ୍ତ୍ୱସାର ଗୀତା'ରେ ଏହି ନିର୍ଗୁଣ ଜ୍ଞାନ ତତ୍ତ୍ୱ ମହିମାକୁ ପ୍ରଶଂସା କରି ଅନ୍ୟ ସବୁ ମତବାଦକୁ ବ୍ୟର୍ଥ ରୂପେ ଘୋଷଣା କରିଛନ୍ତି । ଓଡ଼ିଶାର ସବୁ ସମାଜରେ ଅତ୍ୟନ୍ତ ଲୋକପ୍ରିୟ ଗ୍ରନ୍ଥ 'ଅମର କୋଷ'ରେ ମଧ୍ୟ ସେହି ଭାବନା ପ୍ରକାଶିତ ।

ଅପାର ମଧୁର ଗୁଣ ଯେ କହଇ ସାକ୍ଷୀ ଶବଦ
ଅମରକୋଷ କହିଅଛି ସେ ନୋହଇ ଗ୍ୟାନ ବନ୍ଧ ।

ସଂସାରରେ ପ୍ରଚଳିତ ସବୁ ପ୍ରକାର ମତବାଦକୁ ହେୟଜ୍ଞାନ କରି କବି ଯାହାଙ୍କର ଆଶ୍ରୟ ନେଲେ, ସେ ହେଉଛନ୍ତି, ନୀଳାଚଳ କ୍ଷେତ୍ରର 'ଅପାର କାଳର ବୁଢ଼ାଦିଅଁ ଗୋଟି' । କବି ତାଙ୍କର ଦାସ, ସେବକ ଓ ଶରଣଜନ । କବି ବଳରାମଙ୍କ ପାଇଁ ସେ ହେଉଛନ୍ତି ସବୁ-ପିତା, ମାତା ଓ ଗୁରୁ । ତାଙ୍କରି ସହ ଆତ୍ମୀୟତା ପ୍ରତିଷ୍ଠା କରି ନିଜକୁ 'ଜଗନ୍ନାଥଙ୍କ ବେଟା' ଭାବେ ପ୍ରଚାର କରି କବି ଧନ୍ୟ ହୋଇଛନ୍ତି ।

ଜଗମୋହନ ରାମାୟଣର ପ୍ରତ୍ୟେକ କାଣ୍ଡ ଆରମ୍ଭରେ କବି କିନ୍ତୁ କେବଳ ଜଗନ୍ନାଥଙ୍କୁ ବନ୍ଦନା କରିନାହାନ୍ତି । ବଳଭଦ୍ରଙ୍କୁ ବନ୍ଦନା କଲାବେଳେ ସେ ଦେଖିଛନ୍ତି ଶିବଙ୍କୁ । ସୁଭଦ୍ରା କବିଙ୍କୁ ଦେଖାଦେଇଛନ୍ତି ଲକ୍ଷ୍ମୀ ଓ ଦୁର୍ଗା ପ୍ରଭୃତି ଶକ୍ତିଙ୍କର ବିଭିନ୍ନ ରୂପରେ ।

ସେହିପରି ସୁଦର୍ଶନ ହୋଇଛନ୍ତି ତେଜର ପ୍ରତୀକ । ସୂର୍ଯ୍ୟ, ଅଗ୍ନି ପ୍ରଭୃତି ଦେବତା ସେଥିରେ ପ୍ରକାଶିତ । ଏହିପରି ହିନ୍ଦୁମାନଙ୍କ ଦ୍ୱାରା ପୂଜିତ ସବୁ ଦେବତାଙ୍କୁ ବନ୍ଦନା କରିଥିଲେହେଁ, ଜଗନ୍ନାଥଙ୍କୁ ନେଇ ଜଗମୋହନ ରାମାୟଣର ପରିକଳ୍ପନା । କବିଙ୍କ ହୃଦୟରେ ଜଗନ୍ନାଥ ହିଁ ବିରାଜିତ । ତାଙ୍କରି ଆଜ୍ଞାକୁ ଶିରୋଧାର୍ଯ୍ୟ କରି କବି ଏହି ମହାନ ଗ୍ରନ୍ଥ ରଚନାରେ ହାତ ଦେଇଛନ୍ତି । ରାମାୟଣ ରଚନା କାଳରେ କବି ଯେତେବେଳେ କୌଣସି ଅସୁବିଧାର ସମ୍ମୁଖୀନ ହୋଇଛନ୍ତି, ସେତେବେଳେ ସେ ପୁଣି ଥରେ ଜଗନ୍ନାଥଙ୍କୁ ବନ୍ଦନା କରି ତାଙ୍କର ସହାୟତା ପାଇଁ ଆକୁଳ ନିବେଦନ କରିଛନ୍ତି । ଜଗନ୍ନାଥ ବି କବିଙ୍କ ଆକୁତି ମିନତିରେ ବିଚଳିତ ହୋଇ ତାଙ୍କୁ ସାହାଯ୍ୟ କରିବା ପାଇଁ ଆଗେଇ ଆସିଛନ୍ତି । ଭଗବାନଙ୍କ ସହ ଏହି ଆତ୍ମୀୟତା ଓ ଆତ୍ମସମର୍ପଣ ଭାବ ହିଁ ଜଗମୋହନ ରାମାୟଣର ପ୍ରକୃତ ନିର୍ଯ୍ୟାସ । ଭକ୍ତର ଭକ୍ତି ଭାବନାରେ ଏହା ରସାଣିତ । କାବ୍ୟ ମଧ୍ୟରୁ ଏହାର କେତେକ ଦୃଷ୍ଟାନ୍ତ ଅନୁସନ୍ଧାନ କରାଯାଇପାରେ ।

କବି ଓ ଭଗବାନଙ୍କ କଥାବାର୍ତ୍ତାର ଏକ ଅପୂର୍ବ ଦୃଶ୍ୟ ଲଙ୍କାକାଣ୍ଡର ପ୍ରାରମ୍ଭରେ ଦେଖିବାକୁ ମିଳେ । ଜଗତ୍ ଜନନୀ ପରମ ଲକ୍ଷ୍ମୀ, ଶ୍ରୀରାମ-ବିରହିଣୀ ସୀତା ଲଙ୍କାର ଅଶୋକ ବନରେ ବନ୍ଦିନୀ । ଏକ ପକ୍ଷରେ ସ୍ୱୟଂ ପରଂବ୍ରହ୍ମ, ବିଷ୍ଣୁ, ପୁଣି ବିଷ୍ଣୁଙ୍କ ସପ୍ତମ ଅବତାର ଶ୍ରୀରାମ ଓ ଅନ୍ୟ ପକ୍ଷରେ ପ୍ରବଳ ପରାକ୍ରମୀ ଲଙ୍କାର ରାଜା, ପୁଣି ବିଷ୍ଣୁଙ୍କର ପରମ ଭକ୍ତ ରାବଣ । ଏହି ଦୁଇ ମହାଶକ୍ତି ମଧ୍ୟରେ ଯେଉଁ ସମର ସଂଘଟିତ ହୋଇଥିଲା, ତାହା ଜଣେ ସାଧାରଣ ମାନବ-କବି ପକ୍ଷରେ ବର୍ଣ୍ଣନା କରିବା ଯେ ଆଦୌ ସହଜ ନଥିଲା, କବି ଏ କଥା ହୃଦୟଙ୍ଗମ କରି ଜଗନ୍ନାଥ କ୍ଷେତ୍ରରେ ରଥଯାତ୍ରା ଉତ୍ସବ ବେଳେ ଉପସ୍ଥିତ ହେଲେ । କବିଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ସେହି ଜଗନ୍ନାଥହିଁ କେବଳ ତାଙ୍କୁ ଏହି ମହାବିପଦରୁ ରକ୍ଷା କରିପାରିବେ, ତା' ନହେଲେ ଜଗମୋହନ ରାମାୟଣ ସମ୍ପୂର୍ଣ୍ଣ ହେବା ସମ୍ଭବ ନୁହେଁ । କବି-ମନର ଏହି ଭାବନା ଜଗମୋହନ ରାମାୟଣର ଲଙ୍କାକାଣ୍ଡରେ ନିମ୍ନଭାବେ ପ୍ରକାଶିତ ।

ରାମ ରାବଣର ହୋଇବାକ ସମର  
ଅସକ୍ଷ କଥା ଅତି ଅଗୋଚର ।  
ଦେଖିଲାର କଥା ସହିତ ନୁଆରି  
ମୁହିଂ କେହ୍ନେ କହିବି ମାନବ ତନୁ ଧରି ।

ପୁଣି ବିଚାରଇ କହିବେ ଶ୍ରୀଜଗନ୍ନାଥ
ତେବେ ସେ କହିବି ସିନା ଲଙ୍କାକାଣ୍ଡ ଅର୍ଥ ।

ଜଗନ୍ନାଥଙ୍କୁ ସ୍ମରଣ କରି କବି ପୁଡ଼ା ପୁଟୁଳି ବାନ୍ଧି ଯାଇ ପହଞ୍ଚିଲେ ଶ୍ରୀକ୍ଷେତ୍ରରେ । ସେ ଦିନ ଗୁଣ୍ଡିଚା ଯାତ୍ରା; ଆଗରେ ବଳରାମ, ମଝିରେ ସୁଭଦ୍ରା ଓ ପଛରେ ବିଜେ କରିଛନ୍ତି ନନ୍ଦିଘୋଷ ରଥରେ ମହାବାହୁ ଶ୍ରୀଜଗନ୍ନାଥ ।

ସେହି ନବ ଦୁର୍ବାଦଳ ସମ କଳାମେଘ ସଦୃଶ ଶରୀରକୁ ଅବଲୋକନ କରିବା କ୍ଷଣି କବିଙ୍କ ହୃଦୟରେ ଅପୂର୍ବ ପୁଲକ ଜାତ ହେଲା । ସ୍ପଷ୍ଟ ଦିବାଲୋକ ପରି କବିଙ୍କ ହୃଦୟ ଉଦ୍ଭାସିତ ହୋଇଉଠିଲା । କବି ଜାଣିପାରିଲେ ସତେ ଯେପରି ଜଗନ୍ନାଥ ତାଙ୍କୁ ହିଁ ଚାହିଁ ହସୁଛନ୍ତି ।

ଆଖି ନ ପିଛାଡ଼ନ୍ତି ଭୃତ୍ୟଜନ ଚାହୁଁ ।
ଅଧର ବିକାଶଇ ହସି କଥା କହୁଁ ।।

ଏହି ହସିବା ଠାଣିରୁ କବି ଭଗବାନଙ୍କ ଅନୁଗ୍ରହ ଥିବା ଜାଣିପାରି ଲେଖିଲେ,

ତାହା ବଖାଣି କରଇ ତରିବାର ହିତେ
ଯହୁଁ ଅନୁଗ୍ରହ କଲେ ଜଗନ୍ନାଥେ ।

ଜଗମୋହନ ରାମାୟଣର ଉତ୍ତରାକାଣ୍ଡରେ ଶ୍ରୀରାମ କର୍ତ୍ତୃକ ସୀତା-ନିର୍ବାସନ ପ୍ରସଙ୍ଗ ବର୍ଣ୍ଣନା କଲାବେଳେ କବିଙ୍କ ପାଇଁ ଏହିପରି ଆଉ ଏକ ସଙ୍କଟ କାଳ ଉପସ୍ଥିତ ହୁଏ । ଯେତେବେଳେ କବିଶ୍ରେଷ୍ଠ ବାଲ୍ମୀକି ମୁନି ଏହାର ବର୍ଣ୍ଣନା କରିଥିଲେ, ସେତେବେଳେ ସେ ଜପତପ ପର୍ଯ୍ୟନ୍ତ ପରିତ୍ୟାଗ କରିଦେଇଥିଲେ । ଏପରି ଅବସ୍ଥାରେ ମାନବତନୁଧାରୀ ବଳରାମ ଏହାକୁ କିପରି ବର୍ଣ୍ଣନା କରିବେ ? ଅଥଚ ବର୍ଣ୍ଣନା ନକଲେ ରାମାୟଣ ଚିରଦିନ ପାଇଁ ଅପୂର୍ଣ୍ଣ ରହିଯିବ । ସେ ଥରେ ଲକ୍ଷ୍ମୀ ପୁରାଣରେ ଲକ୍ଷ୍ମୀଙ୍କ ଲକ୍ଷଣ କଥା ବର୍ଣ୍ଣନା କରିଥିଲେ । ସେ ବେଳ କଥା ଅଲଗା । ଲକ୍ଷ୍ମୀଙ୍କୁ ଗୃହରୁ ତଡ଼ିଦେଇ ଜଗନ୍ନାଥ ଓ ବଳରାମ ଅଶେଷ ଦୁଃଖର ଭାଗୀ ହେଲେ ଏବଂ ଶେଷକୁ ବାଧ ହୋଇ ଲକ୍ଷ୍ମୀଙ୍କର ଶରଣାପନ୍ନ ହେଲେ । ବହୁ କାକୁତି ମିନତି କରି ଶେଷରେ ଲକ୍ଷ୍ମୀଙ୍କୁ ମନ୍ଦିରକୁ ଫେରାଇ ଆଣିଥିଲେ । କିନ୍ତୁ ଏଥର ପରମଲକ୍ଷ୍ମୀ ସୀତାଙ୍କର ନିର୍ବାସନ ହେବ ଚିରଦିନ ପାଇଁ । ସୀତା ଅଯୋଧ୍ୟା ଫେରିବେ ସତ; କିନ୍ତୁ ଫେରିବା ସଙ୍ଗେ ସଙ୍ଗେ ପୁଣି ପାତାଳରେ ପ୍ରବେଶ କରିବେ ।

ଲକ୍ଷ୍ମୀଙ୍କ କଷଣଠାରୁ ଏହା ଆହୁରି କରୁଣ, ଆହୁରି ହୃଦୟ-ବିଦାରକ । ଏଥିରେ ବିଷ୍ଣୁଙ୍କ ପାଟରାଣୀ ଲକ୍ଷ୍ମୀହିଁ କେବଳ କବିଙ୍କୁ ସାହାଯ୍ୟ କରିପାରିବେ । କବି ସେଥିପାଇଁ ଏହି ପ୍ରସଙ୍ଗ ପୂର୍ବରୁ କମଳାଙ୍କର ଏକ ବନ୍ଦନା ସଂଯୋଜନା କଲେ । କବିଙ୍କ ଆକୁଳ ପ୍ରାର୍ଥନାରେ ଶ୍ରୀଜଗନ୍ନାଥ ବିଗଳିତ ହୋଇ କବିଙ୍କ ପାଇଁ ଲକ୍ଷ୍ମୀଙ୍କର ହାତଧରି କବିଙ୍କୁ ଅନୁଗ୍ରହ ଆଜ୍ଞା ପ୍ରଦାନ କରିବାପାଇଁ ଅନୁରୋଧ କଲେ ।

କବିଙ୍କର ଭାଳେଣି, କମଳାସ୍ତବ, ଜଗନ୍ନାଥଙ୍କର ଲକ୍ଷ୍ମୀଙ୍କୁ ଅନୁରୋଧ ପ୍ରଭୃତି ଘଟଣା କାବ୍ୟର ଏକ ଏକ ଅବିଚ୍ଛେଦ୍ୟ ଅଙ୍ଗ ରୂପେ ସ୍ଥାନ ପାଇଁ ଜଗନ୍ନାଥଙ୍କ ସହ କବିଙ୍କର ଆତ୍ମୀୟତାକୁ ସୁଦୃଢ଼ କରିଦେଲା ।

ବନ୍ଦଇ କମଳା ଯେ ବିଷ୍ଣୁର ପାଟରାଣୀ ।
ଦୈତ୍ୟବଳ-ଧ୍ୱଂସିନୀ ଜଗତ ଠାକୁରାଣୀ ।
ତାହା କହିବାକୁ ଯେ କରଇ ବଡ଼ ଭୟେ
ତୁ ମୋତେ ସଦୟା କର ଆଗୋ ମହାମାୟେ ।
ନ କହିଲେ ଏହି ଗ୍ରନ୍ଥ ନୁହଇ ସଂପୂର୍ଣ୍ଣ
ତେଣୁ ବ୍ୟାକୁଳରେ ମୁଂ ଭାଳଇ ମନେ ମନ ।
ଶୁଣି ପୁଣି ଅନୁଗ୍ରହ କଲେ ଜଗନ୍ନାଥ
ମୋହ ପାଇଂ ଧଇଲେ ମହାଲକ୍ଷ୍ମୀଙ୍କ ହାତ ।
ସିନ୍ଧୁର ଦୁଲଣୀ ଯେ ସୁପ୍ରସନ୍ନ ହୋଇଲେ
ରାମାୟେଣ ଗ୍ରନ୍ଥ ତୁହି କହସି ବୋଇଲେ ।
ଲକ୍ଷ୍ମୀନାରାୟଣ ଅନୁଗ୍ରହ ଆଜ୍ଞା ପାଇ
ରାମାୟଣ ମହାଗ୍ରନ୍ଥ ବଖାଣଇ ମୁହିଂ ।(ଉତ୍ତରାକାଣ୍ଡ)

ରାମ କଥାକୁ ଜଗନ୍ନାଥଙ୍କ ସହ ମିଶାଇ ଗାଇବାର ଏହି ଅପୂର୍ବ ପ୍ରଚେଷ୍ଟା କେବଳ ଭକ୍ତ ବଳରାମଙ୍କ ଦ୍ୱାରାହିଁ ସମ୍ଭବ ଥିଲା ।

ଜଗନ୍ନାଥ ସହ କବି ବଳରାମଙ୍କ କଥୋପକଥନର ଅନ୍ୟ ଏକ ଦୃଶ୍ୟ ମିଳେ 'ଉଦ୍ଧବ ଗୀତା'ରେ । ସେଦିନ ମଧ୍ୟ ରଥଯାତ୍ରା । କବି ଶ୍ରୀଜଗନ୍ନାଥଙ୍କର ସୁନ୍ଦର ଶ୍ରୀମୁଖକୁ ଅନାଇ ଭାବବିହ୍ୱଳ କଣ୍ଠରେ ପଚାରିଛନ୍ତି :-

ଶ୍ରୀଜଗନ୍ନାଥ ସୁନ୍ଦର ଶ୍ରୀମୁଖ ବଳରାମ ଦାସ ଅନାଇ
କରପତ୍ର ଯୋଡ଼ି ବୋଲଇ,
ଭୋ ସ୍ୱାମୀ ! ତୁମ୍ଭେ ଯେ ଗୋପେ ହୋଇଥିଲ କହ୍ନାଇ
କାଳେ ଯେ ମଥୁରାକୁ ଗଲ
ତହିଁ କଲ କେବଣ ବିଧାନ
ତାହା ମୋତେ ସଞ୍ଚପି କହିବାକୁ ଆଜ୍ଞା ହଉ
କହ ବୋଲି କହିଲେ ଭଗବାନ ।

ଭଗବାନଙ୍କ ଅନୁଗ୍ରହ ଓ ଆଜ୍ଞା ପାଇ କବି 'ଉଦ୍ଧବ ଗୀତା' ରଚନା କଲେ ଏବଂ ଗୁଣ୍ଡିଚାଯାତ୍ରାର ସାତ ଦିନ ଯାକ କବି ଗୁଣ୍ଡିଚା ଯାତ୍ରା ପାଇଁ ରୁଣ୍ଡ ହୋଇଥିବା ଭକ୍ତମାନଙ୍କୁ ଆନନ୍ଦ ପ୍ରଦାନ କଲେ ।

"ଶ୍ରୀଜଗନ୍ନାଥ ଚଢ଼ିଣ ରଥ ଗୁଣ୍ଡିଚା ଘରକୁ ଆଏ ।
ସାତଦିନ ତହିଁ ରାଉତ କାଛେଣି ବଳରାମ ଦାସ ଗାଏ ।"

ଭକ୍ତ ଓ ଭଗବାନଙ୍କର ଏହି ଆତ୍ମୀୟତା ଗ୍ରନ୍ଥ ମଧ୍ୟରେ ବହୁ ଭାବେ ପ୍ରକାଶିତ । କବି କେତେବେଳେ ଭଗବାନଙ୍କ ଦାସ, ସେବକ ବା ଭୃତ୍ୟ ଭାବେ ପରିଚିତ ତ କେତେବେଳେ ଭଗବାନ ତାଙ୍କର ସଖା, ସୋଦର, ଗୋସାଇଁ, ଠାକୁର ଓ ପ୍ରାଣବନ୍ଧୁ । ଜଗନ୍ନାଥଙ୍କଠାରେ ସବୁମତେ ଆତ୍ମସମର୍ପଣ କରିଦେବାପରେ କବି ନିଜକୁ 'ଜଗନ୍ନାଥଙ୍କ ବେଟା' ଭାବେ ପରିଚୟ ଦେଲେ । ଉଦ୍ଧବଗୀତାରେ କବି କହିଛନ୍ତି,

ନୀଳଗିରି ଜଗନ୍ନାଥ ବେଟା ବଳରାମ ଦାସ
ଉଦ୍ଧବ ଗୀତା ଯେ ମୁହିଂ କଲଇଂ ପ୍ରକାଶ ।

କବିଙ୍କ ରଚିତ ଅନ୍ୟ ଏକ କ୍ଷୁଦ୍ର କବିତାରେ ମଧ୍ୟ ଏହି ଭାବନା ଦେଖିବାକୁ ମିଳେ ।

ବେଳେ କହିଂ ସହିବା ପ୍ରଭୁଙ୍କୁ ନ କହିବା
ତୁହି ତ ସର୍ଗେ ଇନ୍ଦ୍ର ଗୋଟା

ଭଣେ ବଳରାମ ଦାସ ତୋଳାଇବା ନୂଆ ଉଆସ
ମୁଂ ଶ୍ରୀଜଗନ୍ନାଥଙ୍କର ବେଟା ।

'ମୁଁ ଶ୍ରୀଜଗନ୍ନାଥଙ୍କ ବେଟା'ରୁ କବି ଜଗନ୍ନାଥଙ୍କଠାରେ ସମ୍ପୂର୍ଣ୍ଣ ଭାବେ ଆତ୍ମସମର୍ପଣ କରିଥିବା ଭାବ ନିହିତ । ଭକ୍ତି ମାର୍ଗରେ ସମ୍ପୂର୍ଣ୍ଣ ସମର୍ପଣହିଁ ସର୍ବଶ୍ରେଷ୍ଠ ତତ୍ତ୍ୱ । ଯେତେବେଳ ପର୍ଯ୍ୟନ୍ତ ଭକ୍ତ ଭଗବାନଙ୍କଠାରେ ନିଜକୁ ସମ୍ପୂର୍ଣ୍ଣଭାବେ ସମର୍ପଣ ନ କରିଛି, ସେତେବେଳ ପର୍ଯ୍ୟନ୍ତ ତା'ର ଭକ୍ତି ଅପୂର୍ଣ୍ଣ । ସେ ଅହଂଭାବରୁ ମୁକ୍ତ ନୁହେଁ । ସମ୍ପୂର୍ଣ୍ଣଭାବେ ସମର୍ପଣ କରିଦେବାପରେ ଭକ୍ତ ଓ ଭଗବାନ ଅଭେଦ ହୋଇଯାଆନ୍ତି । ସେତେବେଳେ ଭକ୍ତ ଓ ଭଗବାନ ମଧ୍ୟରେ କୌଣସି ପାର୍ଥକ୍ୟ ରହେନାହିଁ । ଭଗବାନ ଭକ୍ତରେ ବଶ ହୁଏ ଓ ଭକ୍ତ ଭଗବାନଙ୍କର ଅଧୀନ ହୋଇଯାଏ । ଶ୍ରୀମଦ୍ ଭଗବଦ୍ ଗୀତାରେ କୁହାଯାଇଛି-

ଯୋ ମା ପଶ୍ୟତି ସର୍ବତ୍ର ସର୍ବ ଚ ମୟି ପଶ୍ୟତି ।
ତସ୍ୟାହିଂ ନ ପ୍ରଣଶ୍ୟାମି ଚ ମେ ନ ପ୍ରଣଶ୍ୟତି । (ଗୀତା ୬/୩୦)

ଆତ୍ମସମର୍ପଣ ଭାବନାର ଅନ୍ୟ ଏକ ମହତ୍ତ୍ୱପୂର୍ଣ୍ଣ ତତ୍ତ୍ୱ ମଧ୍ୟ ଜଗମୋହନ ରାମାୟଣରୁ ମିଳିଥାଏ । ଭଗବାନ ଶ୍ରୀକୃଷ୍ଣ ଗୀତାରେ କହଛନ୍ତି, ତଦ୍ଦିଦ୍‌ଭାନ ପ୍ରଦାୟୈଭ୍ୟା ଯୋ ଭୁଂକ୍ତେ ସ୍ତେନ ଏବଂ ସଃ" ୩/୧୨ । ଅର୍ଥାତ୍ ଯାହାଙ୍କ ସହଯୋଗରେ କାମ ସମ୍ପନ୍ନ ହେଲା ତାଙ୍କୁ ତାର ଅଂଶ ନ ଦେଇ ଏକୁଟିଆ ଭୋଗ କରିବା ଚୋରର କାର୍ଯ୍ୟ ।

ଜଗନ୍ନାଥଙ୍କ ଅସୀମ କୃପାରୁ ମୂର୍ଖ, ଅଜ୍ଞ ବଳରାମ ହେଲେ ଭକ୍ତକବି ବଳରାମ । ତାଙ୍କରି ଦୟାରୁ ସେ ରଚନା କଲେ ଜଗମୋହନ ରାମାୟଣ ସଦୃଶ ଜଗତ୍ ମଙ୍ଗଳକାରୀ ମହାନ୍ ଗ୍ରନ୍ଥ । ଭଗବାନଙ୍କ ଏହି ଦାନର ପ୍ରତିଦାନ ହେଲା ଜଗନ୍ନାଥଙ୍କ ପାଦତଳେ 'ଜଗମୋହନ ରାମାୟଣ' ରୂପୀ ପୁଷ୍ପାଞ୍ଜଳି । ଯାହାର ଦାନ ତାକୁ ଫେରାଇଦେଇ କବି କୃତାର୍ଥ ହୋଇଗଲେ ।

ନୀଳଗିରି ଜଗନ୍ନାଥ ଦୟା ମୋତେ କଲେ
ତେଣୁ ସେ ଗ୍ରନ୍ଥ ମୋର ଶରୀରୁ ପ୍ରସରିଲେ
ଜଗତର ହିତେ ମୁଂ ଯେ ଗ୍ୟାନ କହିଲି
ପାପୀଜନଙ୍କର ପୁଣ୍ୟ କରାଇଲି ।

ଜଗମୋହନ ରାମାୟଣ ଯେଥି କବି ଜଗନ୍ନାଥ,
ତାହାର ଆଜ୍ଞାରେ ଲିହିଲି ମୋହୋର ହାଥ ।।

ଜଗମୋହନ ରାମାୟଣ, ଉଦ୍ଧବ ଗୀତା ଓ ଶ୍ରୀମଦ୍ ଭଗବଦ୍ ଗୀତାକୁ ଜଗନ୍ନାଥଙ୍କଠାରେ ସମର୍ପଣ କରିବା ଦ୍ୱାରା ହିନ୍ଦୁ ଧର୍ମର ଅନ୍ୟ ଏକ ଲକ୍ଷ୍ୟ ମଧ୍ୟ ସାଧିତ ହୋଇଥିଲା । ହିନ୍ଦୁ ପରମ୍ପରାର ବୈଶିଷ୍ଟ୍ୟ ହେଲା, ଭୋଜନ ପୂର୍ବରୁ ସବୁ ଖାଦ୍ୟ ପଦାର୍ଥ ଭଗବାନଙ୍କଠାରେ ସମର୍ପଣ କରିବା । ନୈବେଦ୍ୟ ପୂର୍ବରୁ ଭୋଜ୍ୟ ପଦାର୍ଥ ସାଧାରଣ ଖାଦ୍ୟ ଥାଏ । ଅଥଚ ଭୋଗ ଲାଗିବା ପରେ ସେ ସବୁ ହୁଏ ମହାପ୍ରସାଦ । ସେହିପରି ମାନବ-କବି କୃତ କାବ୍ୟ ହେଲା ପ୍ରାକୃତ । ଭଗବାନଙ୍କଠାରେ ସମର୍ପିତ ହେଲାପରେ ଏହା ହୁଏ ଅପ୍ରାକୃତ, ଓ ଦିବ୍ୟ ଭାବାପନ୍ନ ମହାନ୍ କାବ୍ୟ । ସେତେବେଳେ ଏହା ମହାପ୍ରସାଦ ପରି ମଣିଷକୁ ମୋକ୍ଷ ଦାନ କରେ ।

"ମୁଁ ଶ୍ରୀ ଜଗନ୍ନାଥଙ୍କ ବେଟା" କହିବା ଦ୍ୱାରା କବି ବଳରାମ ନିଜକୁ କେବଳ ଜଗନ୍ନାଥଙ୍କ ସନ୍ତାନ ଭାବେ ପ୍ରତିପାଦିତ କରିନାହାନ୍ତି, ମାନବ ସୃଷ୍ଟି ଜାତିଭେଦ ପ୍ରଥାକୁ ବିଲୋପ କରି ସମସ୍ତଙ୍କୁ ମାନବଜାତିର ସନ୍ତାନ ରୂପେ ଗ୍ରହଣ କରିଛନ୍ତି । ସମାଜର ଛୋଟ ଓ ବଡ଼ ଜାତିର ପାର୍ଥକ୍ୟକୁ ଦୂର କରି ସେ ସମସ୍ତଙ୍କୁ ସମାନ ଅଧିକାର ଦେଇଛନ୍ତି । ସାଧାରଣ ମନୁଷ୍ୟ ଓ ଭଗବାନଙ୍କ ଭକ୍ତ ମଧ୍ୟରେ ଥିବା ପାର୍ଥକ୍ୟ ଏଇଠି ସ୍ପଷ୍ଟଭାବେ ବାରି ହୋଇଯାଏ । ସାଧାରଣ ଭୋଜ୍ୟ ପଦାର୍ଥ ପ୍ରସାଦରେ ପରିଣତ ହେବା ପରେ ଜାତି ଓ ବର୍ଣ୍ଣ ନିର୍ବିଶେଷରେ ଏହା ଯେପରି ସମସ୍ତଙ୍କ ଦ୍ୱାରା ଆଦୃତ ହୁଏ, ସେହିପରି ସାଧାରଣ ମନୁଷ୍ୟ ଭକ୍ତରେ ପରିଣତ ହେବା ପରେ ସେ କେବଳ ଏକ ସ୍ୱତନ୍ତ୍ର ଜାତି ନୁହେଁ, ପରମ ଜାତିରେ ପରିଣତ ହୁଏ । ବୈଷ୍ଣବ ଧର୍ମର ଆଚାର୍ଯ୍ୟ ସେଥିପାଇଁ ନିଜକୁ "ଦାସ" ଅର୍ଥାତ୍ ଭଗବାନଙ୍କ ଦାସ ଉପାଧିରେ ଭୂଷିତ କରୁଥିଲେ ଏବଂ ଭକ୍ତ ହେବାପାଇଁ ଜାତିର ଯୋଗ୍ୟତାକୁ ଅସ୍ୱୀକାର କରୁଥିଲେ । "ଉଦ୍ଧବ ଗୀତା"ରେ ନିଜର ଏହି ମହାନ୍ ଆଦର୍ଶକୁ ପ୍ରଚାର କରି କବି କହିଛନ୍ତି-

ଯାହା ତହିଁ ଶ୍ରୀ ବାସୁଦେବର କଥା ନାହିଁ ।
ବ୍ରାହ୍ମଣ ହୋଇଲେହେଂ ତାହାକୁ ପୂଜା କାହିଁ ।
ଚଣ୍ଡାଳ ହୋଇଣ ଯେବେ ବିଷ୍ଣୁ ପୂଜା କରି
କେହୁଣି ହିଂ ଜାତି ତାକୁ ନୋହଇ ନା ସରି ।

ବିଷ୍ଣୁ ଭକ୍ତିଂ ଲୋକର ଜାତିରେ କିସ କାର୍ଯ୍ୟ
ଜାତି ବୋଲିବାକୁ ତାହାକୁ ବଡ଼ ଲାଜ ।।

'ଶ୍ରୀଚୈତନ୍ୟ ଚରିତାମୃତ'ର ଅନ୍ତ୍ୟଲୀଳାରେ ଶ୍ରୀ ମହାପ୍ରଭୁ ମଧ୍ୟ ଅନୁରୂପ ଉପଦେଶ ଦେଇ କହିଛନ୍ତି,

"ନୀଚ ଜାତି ନହେ କୃଷ୍ଣ ଭଜନେ ଅଯୋଗ୍ୟ
ସତକୁଳ ବିପ୍ର ନହେ ଭଜନେର ଯୋଗ୍ୟ ।
ଯେଉ ଭଜେ ସେଇ ବଡ଼ ଅଭକ୍ତ ହୀନ ଛାର
କୃଷ୍ଣ ଭଜନେ ନାହିଁ ଜାତି କୁଳାଦି ବିଚାର ।"

କବିଙ୍କ 'ମୁଁ ଶ୍ରୀ ଜଗନ୍ନାଥଙ୍କ ବେଟା' ଉକ୍ତି ଅଭିମାନର ଦ୍ୟୋତକ ନୁହେଁ, ଦୀନତାର ପ୍ରକାଶକ । 'ଜଗନ୍ନାଥଙ୍କ ବେଟା' କହି ସମସ୍ତଙ୍କ ସହ ସମାନ ହେବାର ଆକୁଳ ନିବେଦନ । ଭଗବାନ କୁଳୀନ, ପଣ୍ଡିତ, ଧନୀ ଅପେକ୍ଷା ଦୁଃଖୀ, ଦରିଦ୍ରଙ୍କୁ ଅଧିକ ଦୟା ପ୍ରକାଶ କରିଥାନ୍ତି ।

ଦୀନେର ଅଧିକ ଦୟା କରେ ଭଗବାନ
କୁଳୀନ ପଣ୍ଡିତ ଧନୀର ବଡ଼ ଅଭିମାନ ।

କଳିଯୁଗରେ ଧ୍ୟାନ, ଯଜ୍ଞ ଓ ଅର୍ଚ୍ଚନା ପ୍ରଭୃତି ମାର୍ଗ ପ୍ରକୃତ ଯୋଗ୍ୟତା ଅଭାବରୁ ନିଷ୍ଫଳ ହୋଇଯାଏ । ଏହି ଅଭାବର ପୂରଣ ହୁଏ ଭଗବାନଙ୍କ ନାମ ସଂକୀର୍ତ୍ତନରେ । 'ବୃହଦ୍ ନାରଦୀୟ ପୁରାଣ'ରେ ନାମସଂକୀର୍ତ୍ତନର ମାହାତ୍ମ୍ୟ ପ୍ରଚାର କରାଯାଇ କୁହାଯାଇଛି,

ହରେର୍ନାମ ହରେର୍ନାମ ହରେର୍ନାମମୈବ କେବଳମ୍ ।

ବଳରାମ ରାମ ନାମ ଜପରେ ମତ୍ତ ଥିବାର ସୂଚନା ଅନ୍ୟତ୍ର ମିଳୁଥିଲେହେଁ, "ଜଗମୋହନ ରାମାୟଣ"ରେ ସେ ଜଗନ୍ନାଥ ଭଜନକୁ ପ୍ରାଧାନ୍ୟ ଦେଇଛନ୍ତି । ଲଙ୍କାକାଣ୍ଡ ଶେଷରେ ଥିବା 'ଜଗନ୍ନାଥ ଭଜନ' ଏହାର ପରିଚାୟକ ।

ଜଗନ୍ନାଥ ଦେଖିବି ଚାହିଁବି ଜଗନ୍ନାଥ
ଜଗନ୍ନାଥ ଛାମୁରେ ଯୋଡ଼ିବି ଦୁଇ ହାତ ।

ଜଗନ୍ନାଥ ବୋଲି ମୁଂ ବଞ୍ଚଇ ହାଦେ ଦିନ ।
ଜଗନ୍ନାଥ ବିନୁ ଆନେ ନ ବଳଇ ମନ ।
ଜଗନ୍ନାଥ ଶରଣ ମୁଂ ଜଗନ୍ନାଥ ଶାଖା
ଜଗନ୍ନାଥ ବିନୁ ମୋର ଆନେ ନାହିଂ ଲେଖା ।
ଜଗନ୍ନାଥ ମୋହର ପ୍ରାଣର ଆଦିପତି
ଜଗନ୍ନାଥ ବିନୁ ମୁଂ ଆନେ ନ ପାଇବି ମୁଗତି ।
ଜଗନ୍ନାଥ ବିତର୍କେ ନାହିଂ ଆନ ସୁଖ
ଜଗନ୍ନାଥ ମୋହର ଅଟନ୍ତି ପଞ୍ଚଭୂତ ।
ଜଗନ୍ନାଥ ସୁନ୍ଦର ମୁଖ ଚାହିଂ ଚାହିଂ
ହୋଇଲି ବଂଶ ମୁଂ ଆନେ କାର୍ଯ୍ୟ ନାହିଂ ।।

ଜଗନ୍ନାଥଙ୍କ ନାମଭଜନ, ରୂପଦର୍ଶନ ଓ ଜଗନ୍ନାଥଙ୍କଠାରେ ସମ୍ପୂର୍ଣ୍ଣ ଆତ୍ମସମର୍ପଣ ପୁଣି ସବୁପ୍ରକାର ସାଧନାଠାରୁ ନିର୍ଗୁଣ ବ୍ରହ୍ମ ସାଧନାର ଶ୍ରେଷ୍ଠତ୍ୱ ପ୍ରତିପାଦନ ମଧ୍ୟରେ ଆପାତତଃ ପରସ୍ପର ବିରୋଧୀ ଭାବନା ନିହିତ ଥିବା ଜଣାଯାଇଥିଲେହେଁ, ବଳରାମ ଦାସ ଭକ୍ତି ଓ ଗ୍ୟାନକୁ ପରସ୍ପରର ପରିପୂରକ ଭାବେ ଗ୍ରହଣ କରିଥିଲେ । 'ବୃହଦାରଣ୍ୟକ ଉପନିଷଦ'ରେ କୁହାଯାଇଛି ଯେ ଯେଉଁ ଉପାସକ ଆପଣାର ଆରାଧ୍ୟ ଈଶ୍ୱରଙ୍କ ସହ ନିଜର ଅଭେଦତ୍ୱ ସ୍ଥାପନ କରେ, ସେ ଈଶ୍ୱରଙ୍କ ଅଭିନ୍ନାତ୍ମା ହୋଇଯାଏ- 'ଆତ୍ମା ହ୍ୟେଷା ସ ଭବତି ।"

ଏଭଳି ଅଭେଦୋପାସକଙ୍କୁ ସଗୁଣ ଈଶ୍ୱର ସର୍ବୋଚ୍ଚ ଜ୍ଞାନ, ଅଖଣ୍ଡ ନିର୍ଗୁଣ ବ୍ରହ୍ମର ସାକ୍ଷାତକାର କରାନ୍ତି । ସେତେବେଳେ ଉପାସକ ନିଜର ବ୍ୟଷ୍ଟିଭାବକୁ ସବୁବେଳ ପାଇଁ ପରିତ୍ୟାଗ କରି ସାଗରରେ ନଦୀ ମିଶିବା ପରି ମିଶିଯାଏ ।

ଯଥା ନଦ୍ୟଃ ସ୍ୟନ୍ଦମାନାଃ ସମୁଦ୍ରେ
ତସ୍ତୁଂ ଗଚ୍ଛନ୍ତି ନାମ ରୂପେ ବିହାୟ
ତଥା ବିଦ୍ୱାନ ନାମ ରୂପାଦ୍ ବିମୁକ୍ତ
ପରାତ୍‌ପରଂ ପୁରୁଷ ମୁପେତି ଦିବ୍ୟମ୍ ।।

କବି ଏହି ଚିନ୍ତାଧାରାକୁ "ବ୍ରହ୍ମାଣ୍ଡ ଭୂଗୋଳ"ରେ ନିମ୍ନଭାବେ ପ୍ରକାଶ କରିଛନ୍ତି,

ନଦୀମାନେ ଯେ ମାର୍ଗେ ଯାନ୍ତି । ଏକା ସମୁଦ୍ରେ ଯେସନେ ମିଳନ୍ତି ।
ସେହିପରି ମନ ନିରୋଧ କଲେ । ପରମ ସୁଖ ପାଇ ସେ କାଳେ ।
ତୃତୀୟ ଅଧ୍ୟାୟ-୩୧/୩୨ ପଦ ।

ଅର୍ଥାତ୍ ନଦୀ ଯେପରି ନିଜର ରୂପକୁ ପରିତ୍ୟାଗ କରି ସମୁଦ୍ରରେ ଲୀନ ହୋଇଯାଏ, ସେହିପରି ସାଧକମାନେ ନିଜର ନାମ, ରୂପର ବନ୍ଧନରୁ ମୁକ୍ତ ହୋଇ ପରାତ୍ପର ଦିବ୍ୟପୁରୁଷ ସହ ଏକାକାର ହୋଇଯାନ୍ତି । ସାଧନାଲବ୍ଧ ଜ୍ଞାନ କେବଳ ସାଧକର ବୌଦ୍ଧିକ କଳ୍ପନା ବିଳାସ ନୁହେଁ, ଏକ ଅନିର୍ବଚନୀୟ ଅନୁଭୂତି । ବ୍ରହ୍ମର ସାକ୍ଷାତ୍କାର ଏବଂ ଚରମ ଅନୁଭୂତି ରୂପ ଏହି ଜ୍ଞାନ ବ୍ୟତୀତ ଈଶ୍ୱରଙ୍କ କୃପା ମିଳେ ନାହିଁ । କବି 'ବ୍ରହ୍ମାଣ୍ଡ ଭୂଗୋଳ' ଗ୍ରନ୍ଥର ବିଦେହ ରାଜନ ଉପାଖ୍ୟାନରେ ଜ୍ଞାନଯୋଗ ଓ ଭକ୍ତିଯୋଗର ଅନୁଭୂତି ମଧ୍ୟରେ ଏକ ସମନ୍ୱୟ ଆଣିଛନ୍ତି ।

ଷଡ଼ଚକ୍ର ସାଧନା ପରି ନିଷ୍କାମ କର୍ମ ମଧ୍ୟ ସାଧକର ଅହଂକାରକୁ ଧୀରେ ଧୀରେ କ୍ଷୀଣ କରି ତା'ର ହୃଦୟ ଓ ବୁଦ୍ଧିକୁ ନିର୍ମଳ କରେ । ଏହି ଅବସ୍ଥାରେ ଚିତ୍ତ ଚାଞ୍ଚଲ୍ୟ ଦୂର ହୋଇ ଭକ୍ତିର ହୃଦୟ ହୁଏ । ଭକ୍ତି ଦ୍ୱାରା ଆକୃଷ୍ଟ ହୋଇ ଯେତେବେଳେ ଭଗବାନଙ୍କ କୃପା ଭକ୍ତକୁ ପ୍ଲାବିତ କରେ, ସେତେବେଳେ ସେ ବ୍ରହ୍ମଜ୍ଞାନରେ ନିମଜ୍ଜିତ ହୋଇଯାଏ । ବ୍ରହ୍ମଜ୍ଞାନର ପୂର୍ଣ୍ଣତା ହିଁ ଭଗବତ୍ କୃପା । ବଳରାମ ଏହାକୁ ହିଁ ଭଗବାନଙ୍କ ଆଜ୍ଞା ଓ ନିର୍ମଳ ଆତ୍ମାରେ ହରି ଦେଖିବା' ବୋଲି କହିଛନ୍ତି । ଏହି ମାର୍ଗରେ କର୍ମ ଓ ଭକ୍ତି ବ୍ରହ୍ମଜ୍ଞାନର ଅଧୀନ । "ଉଦ୍ଧବ ଗୀତା"ରେ କବି କହିଛନ୍ତି,

ମୋହ ବାଧାଏ ବଣା ହୋଇଥିଲେ
ଏହା ଶୁଣିଣ ଚେତନା ପାଇଲେ ।
ଦର୍ପଣ ମାଜିଲେ କଳଙ୍କ ଗଲା ।
ଉଦ୍ଧବ ଗୋପୀଙ୍କି ତେମନ୍ତ କଲା ।
ନିର୍ମଳ ଆତ୍ମାରେ ଦେଖିଲେ ହରି
ଆନନ୍ଦ ହୋଇ ଗୋପୀ ତୁଷ୍ଟି କରି ।

'ନାରଦ ଭକ୍ତି ସୂତ୍ରରେ ଭକ୍ତିକୁ ସର୍ବଫଳସ୍ୱରୂପା ରୂପେ ଉଲ୍ଲେଖ କରାଯାଇଛି । ବ୍ରହ୍ମାକୁମାର ନାରଦଙ୍କ ମତରେ ଭକ୍ତି କାହାରି ଅଧୀନ ନୁହେଁ ।

## ରଚନାବଳୀ :

ବଳରାମ ଦାସଙ୍କ ଭଣିତା ଥିବା ବହୁ ଗ୍ରନ୍ଥ ଦେଖିବାକୁ ମିଳେ। ସେ ସବୁର ପ୍ରାମାଣିକତା ସମ୍ପର୍କରେ ଅଦ୍ୟାବଧି କୌଣସି ଆଲୋଚକ ଆଲୋଚନା କରିନାହାନ୍ତି। ପଣ୍ଡିତ ବିନାୟକ ମିଶ୍ର କବିଙ୍କ ରଚନା ଭାବେ ୩୧ ଖଣ୍ଡ ଗ୍ରନ୍ଥର ଗଣନା କରିଥିଲେ ହେଁ, ସେଥିମଧ୍ୟରୁ କେବଳ ପାଞ୍ଚଖଣ୍ଡ ବ୍ୟତୀତ ଅନ୍ୟସବୁ ଗ୍ରନ୍ଥ ଅନ୍ୟ କବିଙ୍କ ଦ୍ୱାରା ରଚିତ ହୋଇଥିବା ଜଣାଯାଏ। ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ଦଶ ଖଣ୍ଡ ଗ୍ରନ୍ଥର ଏକ ତାଲିକା ତାଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ'ରେ ସନ୍ନିବେଶିତ କରିଛନ୍ତି। ସେ ସବୁ ଗ୍ରନ୍ଥ ହେଲା-

୧। ଜଗମୋହନ ରାମାୟଣ
୨। ଅମରକୋଷ ଗୀତା
୩। ବେଦାନ୍ତସାର ଗୁପ୍ତଗୀତା
୪। ବଟ ଅବକାଶ
୫। ଗୁପ୍ତ ଗୀତା
୬। ବ୍ରହ୍ମାଣ୍ଡ ଭୂଗୋଳ
୭। ବେଢ଼ା ପରିକ୍ରମା
୮। ସପ୍ତାଙ୍ଗ ଯୋଗସାର ଟୀକା
୯। ଭାବସମୁଦ୍ର
୧୦। ଶ୍ରୀ ଭଗବଦ୍ ଗୀତା ଅର୍ଥ

ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି 'ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ'ରେ ବଳରାମ ଦାସଙ୍କ ରଚିତ ଗଦ୍ୟଗ୍ରନ୍ଥ 'ବ୍ରହ୍ମଗୀତା'ରୁ ଗୋଟିଏ ଅଧ୍ୟାୟ ଉଦ୍ଧାର କରିଛନ୍ତି। ଅଧ୍ୟାପକ ବଂଶୀଧର ମହାନ୍ତିଙ୍କ ତାଲିକାରେ ଆଉ କେତେକ ନୂତନ ଗ୍ରନ୍ଥର ନାମ ଦେଖିବାକୁ ମିଳେ।

୧। ଜ୍ଞାନ ଚୂଳାମଣି ଗୀତା
୨। ବିରାଟ ଗୀତା
୩। ଲକ୍ଷ୍ମୀ ପୁରାଣ
୪। ଦାମ୍ଭିସାର ଗୀତା
୫। ପଣସ ଚୋରୀ
୬। ଏକ ଅଧ୍ୟାୟ ମହାଭାରତ
୭। ମନୁ ଗୀତା

୮ । ଗୁପ୍ତ ଟୀକା
୯ । ମାଳ ଶ୍ରୀ
୧୦ । ଜ୍ଞାନ ପରତେ ଚୂଡ଼ାମଣି (ଗଦ୍ୟ)
୧୧ । ମୃଗୁଣୀ ସ୍ତୁତି ।

ଏହା ବ୍ୟତୀତ ଆଉ କେତେକ ଗ୍ରନ୍ଥରେ ବଳରାମ ଦାସଙ୍କ ଭଣିତା ଦେଖିବାକୁ ମିଳେ । ସେ ସବୁ ହେଲା,

୧ । କର୍ଣ୍ଣ ଦାନ
୨ । ପ୍ରଳମ୍ବସାର ଗୀତା-ଗଦ୍ୟ
୩ । ହନୁମାନ ଚଉତିଶା
୪ । ଛଅ ଚଉପଦୀ
୫ । ବ୍ରହ୍ମ କୁଣ୍ଡଳୀ
୬ । ଉଦ୍ଧବ ଗୀତା
୭ । ବାରମାସୀ ଗୀତ
୮ । କେତେକ କ୍ଷୁଦ୍ର କବିତା
୯ ।ବୃନ୍ଦାବନ ପରିକ୍ରମା
୧୦ । ଶରଦଚନ୍ଦ୍ର ଚଉତିଶା
୧୧ । ଚାନ୍ଦ ଚଉତିଶା
୧୨ । ଉହୁଁ ଚଉତିଶା

କବିଙ୍କ ଭଣିତା ଥିବା ବିଭିନ୍ନ ଗ୍ରନ୍ଥ ମଧ୍ୟରୁ ପଣ୍ଡିତ ନୀଳକଣ୍ଠ 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମ'ରେ 'ବଟ ଅବକାଶ' ଓ 'ଭାବ ସମୁଦ୍ର' ପ୍ରଭୃତି ଗ୍ରନ୍ଥର ପ୍ରାମାଣିକତା ଉପରେ ସନ୍ଦେହ ପ୍ରକାଶ କରିଛନ୍ତି । ତାଙ୍କ ମତରେ, ଏଥିରେ ଲିପିବଦ୍ଧ ହୋଇଥିବା ଅଲୌକିକ କାହାଣୀ ସବୁକୁ କବି ନିଜେ ଲେଖି ନିଜର ମହିମା ପ୍ରଚାର କରିବା ସମ୍ଭବ ନୁହେଁ । ପଣ୍ଡିତ ନୀଳକଣ୍ଠଙ୍କ ଏହି ଉକ୍ତି ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ହେଲେ ବି ଏ ସଂପର୍କରେ ବିଶେଷ ଅନୁସନ୍ଧାନ ନ ହୋଇ ଭଣିତା ଥିବା ସବୁ ଗ୍ରନ୍ଥକୁ ଷୋଡଶ ଶତାବ୍ଦୀର ବିଶିଷ୍ଟ କବି ବଳରାମଙ୍କ ରଚନାରୂପେ ଗ୍ରହଣ କରାଯାଇଛି । ଫଳରେ ବଳରାମଙ୍କ ଭାଷା, କବିତ୍ୱ, ଦର୍ଶନ ଓ ସାଧନାମାର୍ଗ ସମ୍ପର୍କରେ ବହୁ ବିରୋଧୀ ମତବାଦର ସୃଷ୍ଟି ହୋଇଛି ।

ବଳରାମ ଭଣିତା ଥିବା ଗ୍ରନ୍ଥ ମଧ୍ୟରୁ 'ଛଅ ଚଉପଦୀ'ର ରଚୟିତା, 'ଜଗନ୍ନାଥ

ଶିଷ୍ୟ ବଳରାମ'। 'ବ୍ରହ୍ମ କୁଣ୍ଡଳୀ'ର ରଚୟିତା ନିଜକୁ ଜ୍ୟୋତିଷ ବଳରାମ କହିଛନ୍ତି। 'ଏକ ଅଧ୍ୟାୟ ମହାଭାରତ'ର ଅନ୍ୟ ନାମ 'ଗୋଚର ଗୀତା' ବା 'ଗୋଚରାଚର ଗୀତା'। ଏହାର ଦୁଇଟି ପାଣ୍ଡୁଲିପିରେ 'ଛାର ଅରକ୍ଷିତ' ଭଣିତା ଦେଖିବାକୁ ମିଳେ। 'ସପ୍ତାଙ୍ଗ ଯୋଗସାର ଟୀକା'ର ପ୍ରକାଶିତ ଗ୍ରନ୍ଥରେ ବଳରାମଙ୍କ ନାମ ଥିଲେ ହେଁ, ପାଣ୍ଡୁଲିପିରେ ଏହା ଦେଖିବାକୁ ମିଳେ ନାହିଁ। ଏହାର ଶେଷ ପଦ ହେଲା,

ଗୋରେଖ ନାଥ କହିଲେ ମଲ୍ଲିକା ଶୁଣିଲେ
ଗୁରୁଶିଷ୍ୟ ପରମହଂସ ଆତ୍ମା ବିହରିଲେ।

'ପଣସ ଚୋରୀ'ରେ ଜଣେ ବଳରାମ ଅନ୍ୟ ଜଣେ ବଳରାମ ଅର୍ଥାତ୍ ତାଙ୍କ ପୂର୍ବବର୍ତ୍ତୀ କୌଣସି ବଳରାମଙ୍କ ଅଲୌକିକତା ପ୍ରଚାର କରିବା ପାଇଁ ଏହି ଉପାଖ୍ୟାନର ବର୍ଣ୍ଣନା କରିଛନ୍ତି। 'ବ୍ରହ୍ମାଣ୍ଡ ଭୂଗୋଳ'ର ଦୁଇଟି ରୂପ ଦେଖିବାକୁ ମିଳେ। ସେଥିରୁ ଗୋଟିକରେ 'ସୋମନାଥ ସତ' ଭାବେ ବଳରାମଙ୍କର ଉଲ୍ଲେଖ ଥିବାରୁ ଏହାକୁ ହିଁ ପ୍ରାମାଣିକ ରଚନା ରୂପେ ଗ୍ରହଣ କରାଯାଇପାରେ। 'ପ୍ରାଚୀନ ଗଦ୍ୟପଦ୍ୟାବର୍ଗ'ରେ ପ୍ରକାଶିତ 'ବ୍ରହ୍ମଗୀତା'ର ଆଉ ଏକ ଅଂଶ ଅର୍ଥାତ୍ ଷଷ୍ଠ ଅଧ୍ୟାୟ ଦେଖିବାକୁ ମିଳେ। ଅଥଚ ଉଭୟ ଅଂଶର କଥା ପ୍ରାୟ ସମାନ। ସମ୍ପୂର୍ଣ୍ଣ ଗ୍ରନ୍ଥ ଆବିଷ୍କାର ନ ହେବା ପର୍ଯ୍ୟନ୍ତ ଏହାର ପ୍ରାମାଣିକତା ବିଚାର କରିବା ସମ୍ଭବ ନୁହେଁ। 'ବେଦାନ୍ତ ସାର ଗୁପ୍ତଗୀତା'ରେ ବଳରାମଙ୍କ ସମ୍ପର୍କରେ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଘଟଣାର ଉଲ୍ଲେଖ ଦେଖିବାକୁ ମିଳେ। ପ୍ରଥମଟି ହେଲା, କବି ବଳରାମ 'ପ୍ରତାପରୁଦ୍ରଙ୍କ ସପ୍ତଦଶ ଅଙ୍କରେ ଅର୍ଥାତ୍ ୧୫୦୦ ଖ୍ରୀଷ୍ଟାବ୍ଦରେ ଜଡ଼ ହରିଦାସ ମୁଖରେ ବେଦାନ୍ତର ବ୍ୟାଖ୍ୟା କରିପାରିଥିଲେ। ଦ୍ୱିତୀୟଟି ହେଲା- ମୁକ୍ତି ମଣ୍ଡପରେ କବିଙ୍କର ଏହି ପରୀକ୍ଷା ହେଉଥିବା ବେଳେ ସେଠାରେ ଶ୍ରୀଚୈତନ୍ୟ ଓ ପ୍ରତାପରୁଦ୍ର ଉଭୟେ ଉପସ୍ଥିତ ଥିଲେ ଏବଂ ପ୍ରତାପରୁଦ୍ର ଶ୍ରୀଚୈତନ୍ୟଙ୍କୁ ଗୁରୁ ଏବଂ ବଳରାମଙ୍କୁ 'ପରମଗୁରୁ' ରୂପେ ସମ୍ମାନିତ କରିଥିଲେ। ଏହି ଘଟଣାକୁ ଏକ ଐତିହାସିକ ଏବଂ ସତ୍ୟଘଟଣା ରୂପେ ଗ୍ରହଣ କରି ଓଡ଼ିଆ ସାହିତ୍ୟର ଐତିହାସିକମାନେ ଏହାର ଉଲ୍ଲେଖ କରିଛନ୍ତି। ପୁରୀରେ ଥିବା 'ଜଡ଼ା ମଠ'କୁ ମଧ୍ୟ ଜଡ଼ ହରିଦାସଙ୍କ ମଠ ରୂପେ ଗ୍ରହଣ କରାଯାଇଥାଏ।

ଭାରତୀୟମାନଙ୍କର ବିଶ୍ୱାସ ଓ ପରମ୍ପରା ଅନୁଯାୟୀ ପ୍ରଥମ ଘଟଣାକୁ ଅସତ୍ୟ କହିବା ସମ୍ଭବ ନୁହେଁ। ମହାରାଷ୍ଟ୍ରର ମହାନ୍ ସାଧକ ଜ୍ଞାନେଶ୍ୱର ଏକ ମଇଁଷି ମୁହଁରୁ ଗୀତା ଅର୍ଥ କରି ଶୁଣାଇଥିଲେ, ମହାପୁରୁଷମାନଙ୍କ ପାଇଁ ଏପରି ଅଲୌକିକ ଘଟଣା ସବୁର

ଉଲ୍ଲେଖ ପ୍ରାୟ କରାଯାଇଥାଏ ।

ଦ୍ୱିତୀୟ କଥା ଅର୍ଥାତ୍ ୧୫୧୦ ଖ୍ରୀଷ୍ଟାବ୍ଦରେ ଶ୍ରୀଚୈତନ୍ୟ, ବଳରାମ ଓ ପ୍ରତାପରୁଦ୍ର ପୁରୀରେ ଏକତ୍ର ହେବା । ଶ୍ରୀଚୈତନ୍ୟ ୧୫୧୦ ଖ୍ରୀଷ୍ଟାବ୍ଦରେ ପୁରୀକୁ ଆସି, ସେଠାରେ ମାତ୍ର ଅଠର ଦିନ ରହି ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ଦାକ୍ଷିଣାତ୍ୟ ଯାତ୍ରା କରିଥିଲେ । ଅନ୍ୟ ମତ ଥିଲେ ବି ଡକ୍ଟର ବିମାନ ବିହାରୀ ମଜୁମଦାରଙ୍କ ପରି ପ୍ରମୁଖ ଆଲୋଚକ ଏହାକୁ ହିଁ ଗ୍ରହଣ କରି ଶ୍ରୀଚୈତନ୍ୟଙ୍କ ଜୀବନ ଚରିତର କାଳ ନିର୍ଣ୍ଣୟ କରିଛନ୍ତି । ସେତେବେଳେ ପ୍ରତାପରୁଦ୍ର ଉତ୍କଳର ଦାକ୍ଷିଣାତ୍ୟ ସୀମାରେ କୃଷ୍ଣଦେବ ରାୟଙ୍କ ସହ ଯୁଦ୍ଧରେ ବ୍ୟାପୃତ ଥିଲେ । ପ୍ରତାପରୁଦ୍ର ଓ ଶ୍ରୀଚୈତନ୍ୟଙ୍କ ସାକ୍ଷାତ ପାଇଁ ବହୁ ସମୟ ଲାଗିଥିଲା । ଶ୍ରୀଚୈତନ୍ୟ ପ୍ରଥମେ ବିଷୟୀ ପ୍ରତାପରୁଦ୍ରଙ୍କୁ ସାକ୍ଷାତ ଦେବା ପାଇଁ ଚାହିଁ ନଥିଲେ । ପରେ ବହୁଲୋକଙ୍କ ପ୍ରଚେଷ୍ଟାରେ ଏହି ମିଳନ ସମ୍ଭବ ହୋଇ ପାରିଥିଲା ଏବଂ ଯେତେଦୂର ସମ୍ଭବ ଏହି ମିଳନ ହୋଇଥିଲା ଶ୍ରୀଚୈତନ୍ୟ ଦାକ୍ଷିଣାତ୍ୟରୁ ଫେରିବା ପରେ ଅର୍ଥାତ୍ ୧୫୧୬ ଖ୍ରୀଷ୍ଟାବ୍ଦ ପରେ । ଏପରି ଅବସ୍ଥାରେ ୧୫୧୦ ଖ୍ରୀଷ୍ଟାବ୍ଦରେ ଗୁରୁ ଓ 'ପରମ ଗୁରୁ' କଥା କେବଳ କଳ୍ପନାର କଥା । ଜଗନ୍ନାଥ ଦାସଙ୍କ 'ଅତିବଡ଼ୀ' ଉପାଧି ପରି ବଳରାମଙ୍କର ଏହି 'ପରମଗୁରୁ' ପଦ । ଏସବୁ ସତ୍ୟ ଉପରେ ଆଧାରିତ ନୁହେଁ । 'ଭାବ ସମୁଦ୍ର'ରେ ବର୍ଣ୍ଣିତ ହୋଇଥିବା ଉପାଖ୍ୟାନ ଭକ୍ତିତତ୍ତ୍ୱ ଦୃଷ୍ଟିରୁ ପୁଣି ଭକ୍ତ ବଳରାମଙ୍କ ଜୀବନ-ଦର୍ଶନ ଦୃଷ୍ଟିରୁ ଅତ୍ୟନ୍ତ ଉପାଦେୟ ହେଲେ ବି, ରାଜାଙ୍କୁ ରାଜକର୍ମଚାରୀ, ରାଣୀ, ଅମାତ୍ୟ, ରାଜପୁତ୍ରଙ୍କ ସମ୍ମୁଖରେ ବାଙ୍କି ମୁହାଣରୁ ବଡ଼ଦାଣ୍ଡକୁ ଗଳାଥା ଦେଇ ଆଣିବା ଘଟଣାକୁ ବିଶ୍ୱାସ କରିହୁଏ ନାହିଁ । 'ବଟ ଅବକାଶ'ର ଉଦ୍ଭଟ କଳ୍ପନା ଏହାର ଅପ୍ରମାଣିକତାକୁ ପୁଷ୍ଟ କରେ । ଏସବୁ କେବଳ ଭକ୍ତିର ମହିମା ପ୍ରଚାର ପାଇଁ ଉଦ୍ଦିଷ୍ଟ । 'ଦୀପ୍ତିସାର ଗୀତା' ଓ 'ବ୍ରହ୍ମ କୁଣ୍ଡଳୀ'ରେ ଥିବା ବେଶ୍ୟା ବା ଚାରୁବେଶ୍ୟା ଉପାଖ୍ୟାନ 'ଭାବ ସମୁଦ୍ର'ର ପୁନରାବୃତ୍ତି । ଏହାର ପ୍ରାମାଣିକତା ମଧ୍ୟ ସନ୍ଦେହାସ୍ପଦ । ଏହା ବ୍ୟତୀତ ଭାଷା ଦୃଷ୍ଟିରୁ ବିଚାର କଲେ, 'ଜଗମୋହନ ରାମାୟଣ', 'ଉଦ୍ଧବ ଗୀତା', 'ଶ୍ରୀମଦ୍ ଭଗବଦ୍ ଗୀତା' ଓ 'ବ୍ରହ୍ମାଣ୍ଡ ଭୂଗୋଳ' ଏକ ସ୍ୱତନ୍ତ୍ର ପର୍ଯ୍ୟାୟର ଅଧିକାରୀ । 'ମୁଁ ଶ୍ରୀ ଜଗନ୍ନାଥଙ୍କ ବେଟା' ଓ ଆଉ କେତେକ କ୍ଷୁଦ୍ର କବିତାରେ ବଳରାମଙ୍କ ସ୍ୱକୀୟ ଶୈଳୀ ଅତ୍ୟନ୍ତ ମନୋରମ ଢ଼ଙ୍ଗରେ ପ୍ରକାଶିତ । ଅନ୍ୟ ଗ୍ରନ୍ଥସବୁରେ ଏ ଭାଷା ନାହିଁ । ସାଧନାମାର୍ଗ ବର୍ଣ୍ଣନା କରୁଥିବା ଭାଷାଶୈଳୀ ଆଶା କରାଯାଉ ନଥିଲେ ହେଁ, କିଛି ସାଦୃଶ୍ୟ ମିଳିବାର କଥା । କିନ୍ତୁ ତାହା ମିଳେ ନାହିଁ । ଏହିପରି ଭାବେ ବଳରାମଙ୍କ ଭଣିତା ଥିବା ବହୁ ଗ୍ରନ୍ଥ ଯେ ଷୋଡଶ ଶତାବ୍ଦୀର କବି ବଳରାମଙ୍କ ରଚିତ ନୁହେଁ, ଏହା ଅନୁମାନ କରାଯାଇ ପାରେ । ନିମ୍ନରେ କେବଳ କେତେକ ପ୍ରସିଦ୍ଧ ଗ୍ରନ୍ଥର ଆଲୋଚନା ପ୍ରଦାନ କରାଯାଇଛି ।

## ଜଗମୋହନ ରାମାୟଣ :

ବଳରାମ 'ଜଗମୋହନ ରାମାୟଣ'ର ରଚୟିତା ଭାବେ ପ୍ରସିଦ୍ଧ। ଏହାର କବି ପ୍ରଦତ୍ତ ନାମ 'ଜଗମୋହନ ରାମାୟଣ' ହେଲେ ବି ଏହାକୁ କେହି କେହି 'ବଳରାମ ଦାସଙ୍କ ରାମାୟଣ' ଓ 'ଦାଣ୍ଡି ରାମାୟଣ' କହିଥାନ୍ତି। ଏହା ସାତ କାଣ୍ଡରେ ସଂପୂର୍ଣ୍ଣ ଓଡ଼ିଆ ଭାଷାର ପ୍ରଥମ ରାମାୟଣ।

ବାଲ୍ମୀକି ରାମାୟଣ ରଚିତ ହେବାପରେ ଏ ଦେଶରେ ରାମ-କଥାକୁ ନେଇ ସଂସ୍କୃତରେ ବହୁ କାବ୍ୟ, ପୁରଣ ଓ ନାଟକ ରଚିତ ହୋଇ ପ୍ରସିଦ୍ଧିଲାଭ କରିଥିଲା । ସେ ସବୁରେ ଥିଲା ରାମକଥାର ବହୁ ବିଚିତ୍ର ରୂପ । ସଂସ୍କୃତରୁ ଲୋକକଥାକୁ ପୁଣି ଲୋକକଥାରୁ ସଂସ୍କୃତକୁ ରାମକଥାର ନିରନ୍ତର ପ୍ରବାହ ଫଳରେ ଏହା ଜନଜୀବନର ଏକ ଅବିଭାଜ୍ୟ ଅଙ୍ଗରୂପେ ପରିଣତ ହୋଇଥିଲା । ସେଥିରେ ରାମଙ୍କ ଗୁଣ ଉପରେ ଗୁରୁତ୍ୱ ଦିଆଯାଇ ରଚିତ ହେଲା, ରଘୁବଂଶ, ରାବଣ ବଧ ବା ସେତୁବନ୍ଧ, ଭଟ୍ଟିକାବ୍ୟ ବା ରାବଣ ବଧ, ରାମଚରିତ, ରାମାୟଣ ମଞ୍ଜରୀ ତଥା ଦଶାବତାର ଚରିତ, ଉଦାର ରାଘବ, ରଘୁନାଥ ଚରିତ ପ୍ରଭୃତି କାବ୍ୟ, ପ୍ରତିମା ନାଟକ, ଅଭିଷେକ ନାଟକ, ଉତ୍ତରରାମ ଚରିତ (ଅଷ୍ଟମ ଶତାବ୍ଦୀ), (ଉଦାତ୍ତ ରାଘବ, (ଅଷ୍ଟମ ଶତାବ୍ଦୀ) ଅନର୍ଘ ରାଘବ (ନବମ ଶତାବ୍ଦୀ), ବାଳ ରାମାୟଣ (ଦଶମ ଶତାବ୍ଦୀ) ମହାନାଟକ (ଦଶମ ଶତାବ୍ଦୀ), ପ୍ରସନ୍ନ ରାଘବ (ଦ୍ୱାଦଶ ଶତାବ୍ଦୀ) ଉଲ୍ଲାସ ରାଘବ (ତ୍ରୟୋଦଶ ଶତାବ୍ଦୀ) ଉନ୍ନତ ରାଘବ (ପଞ୍ଚଦଶ ଶତାବ୍ଦୀ) ପ୍ରଭୃତି ନାଟକ ହଂସ ଦୂତ, ଭ୍ରମର ଦୂତ ପ୍ରଭୃତି ଖଣ୍ଡକାବ୍ୟ ଓ ରାଘବ ପାଣ୍ଡବୀୟ ପରି ଶ୍ଳେଷ କାବ୍ୟ । ସଂସ୍କୃତ ଭାଷା ବ୍ୟତୀତ ପ୍ରାକୃତ ଓ ଅପଭ୍ରଂଶରେ ମଧ୍ୟ ରାମକଥା ବିଷୟକ ବହୁ ଗ୍ରନ୍ଥ ଦେଖିବାକୁ ମିଳେ । ଏହାପରେ ତାମିଲରେ 'କଂବନ ରାମାୟଣ' ତେଲୁଗୁରେ 'ରଙ୍ଗନାଥ ରାମାୟଣ', ଆସାମୀରେ 'କନ୍ଦଳୀ ରାମାୟଣ' ଓ ବଙ୍ଗଳାରେ 'କୃତ୍ତିବାସ ରାମାୟଣ' ରଚିତ ହେଲା । ଏସବୁ ରାମାୟଣ କବିଙ୍କ ନାମ ସହ ସଂଯୁକ୍ତ ହୋଇ ପ୍ରସିଦ୍ଧି ଲାଭ କଲା । କାନାଡ଼ା ଭାଷାର ରାମାୟଣରେ କବି ଅପେକ୍ଷା ସ୍ଥାନକୁ ପ୍ରାଧାନ୍ୟ ଦିଆଯାଇ, ଏହାର ନାମ ହେଲା 'ତୋରୱେ ରାମାୟଣ' । ମହାରାଷ୍ଟ୍ରର ଏକନାଥକୃତ 'ଭାବାର୍ଥ ରାମାୟଣ'ରେ ସ୍ଥାନ ନାହିଁ କି କବି ନାହାନ୍ତି । ବଳରାମ ଦାସ ତାଙ୍କ ପୂର୍ବରୁ ପ୍ରଚଳିତ ସଂସ୍କୃତ ସାହିତ୍ୟର ପରମ୍ପରା ଅର୍ଥାତ୍ ରାମଙ୍କ ଗୁଣ ଉପରେ ଗୁରୁତ୍ୱ ଦେଇ ପୁଣି ଏଥିରେ ବ୍ୟତିକ୍ରମ ସୃଷ୍ଟି କରି ଅର୍ଥାତ୍ ନିଜ ଆରାଧ୍ୟ ଦେବତାଙ୍କୁ ଗ୍ରନ୍ଥର ରଚୟିତା ଭାବେ ଗ୍ରହଣ କରି ନିଜ ଗ୍ରନ୍ଥର ନାମ ଦେଲେ 'ଜଗମୋହନ ରାମାୟଣ' । ଉତ୍ତରାକାଣ୍ଡରେ କବି

କହିଛନ୍ତି,

ଜଗମୋହନ ରାମାୟଣ ଏଥି କବି ଜଗନ୍ନାଥ,
ତାହାର ଆଜ୍ଞାରେ ଲିହିଲି ମୋହର ହାଥ ।

ଏ 'ଜଗମୋହନ' ଯେ ଜଗନ୍ନାଥ, ଏହା ଆଦିକାଣ୍ଡରେ ଥିବା କବିଙ୍କ ଉକ୍ତିରୁ ପ୍ରମାଣିତ ହୋଇଥାଏ ।

ତ୍ରଇଲୋକ ବଶ ହୁଅଇ ଯାହାକୁ ଚାହିଁ,
ଏ ସେ ଜଗନ୍ନାଥ ଜଗମୋହନ ଗୋସାଇଁ ।

ବଳରାମ ଦାସଙ୍କ ଏହି ଉକ୍ତିରେ ଜଗନ୍ନାଥଙ୍କର ଅନ୍ୟନାମ 'ଜଗମୋହନ' ହୋଇଥିବା ଜଣାଯାଏ । ଜଗନ୍ନାଥ କେବଳ ଜଗତର ନାଥ ନୁହଁନ୍ତି, ଜଗମୋହନ ଗୋସାଇଁ ଭାବେ ତାଙ୍କଠାରେ ଜଗତକୁ ମୁଗ୍ଧ କରିପାରିବା ଶକ୍ତି ନିହିତ । ସେ ତାଙ୍କର ସେହି ମୋହନ ରୂପରେ ତ୍ରୈଲୋକ୍ୟକୁ ବଶ କରିପାରୁଥିଲେ । ଜଗନ୍ନାଥଙ୍କର ଏହି ମୋହିନୀଶକ୍ତି ହେତୁ ସେ ଏହାକୁ 'ମୋହନ ରାମାୟଣ' କହିଛନ୍ତି ।

କବିମନର ଏହିକଥା ଆଦିକାଣ୍ଡର ଆଉ ଏକ ଉଦ୍ଧୃତାଂଶରେ ସ୍ପଷ୍ଟ ହୋଇଥାଏ । ମିଥିଳାରେ ଅନୁଷ୍ଠିତ ହେଉଥିବା ସ୍ୱୟମ୍ବର ସଭାରେ ଶ୍ରୀରାମ ଉପସ୍ଥିତ ହେବାକ୍ଷଣି ସେଠାରେ ଥିବା ସବୁ ଲୋକଙ୍କ ଦୃଷ୍ଟି ତାଙ୍କ ଆଡ଼କୁ ସ୍ୱତଃ ଟାଣିହୋଇ ଯାଇଥିଲା । ସ୍ୱୟମ୍ବର ସଭାରେ ସବୁ ସୁନ୍ଦର ଜିନିଷକୁ ଛାଡ଼ି ସମସ୍ତେ ଶ୍ରୀରାମଙ୍କୁ ଏକ ଦୃଷ୍ଟିରେ ଦେଖିବାକୁ ଲାଗିଲେ । ଲୋକମାନଙ୍କ ମନର ଏହି ଭାବନାକୁ କବି, ସୀତାଙ୍କ ସଖୀ ମନମାୟାର ଭାଷାରେ ଅତି ସୁନ୍ଦରଭାବେ ବିଶ୍ଳେଷଣ କରିଛନ୍ତି । ସେ ସୀତାଙ୍କୁ ବୁଝାଇବାକୁ- ଯାଇ କହିଛନ୍ତି, ରାମ ଆଉ କେହି ନୁହନ୍ତି; ସେ ହେଉଛନ୍ତି, ବିଷ୍ଣୁ, ସେ ଚକ୍ରପାଣି, ସେ ହରି, ସେ ଜଗତ ଅଧିକାରୀ, ସେ ଜଗନ୍ନାଥ, ସେ ପୁରୁଷୋତ୍ତମ; ସର୍ବୋପରି ସେ ଜଗମୋହନ । ପ୍ରଭୁଙ୍କର ପ୍ରତ୍ୟେକ ନାମରେ କେବଳ ଗୋଟିଏ ମହନୀୟ ଗୁଣ ପ୍ରକାଶିତ ତାହା ହେଲା ସର୍ବଜନ ମୋହିବା । ମନମାୟା ଏହି ଗୁଣ ଉପରେ ଗୁରୁତ୍ୱ ଦେଇ ଶ୍ରୀରାମଙ୍କର ମହିମା ପ୍ରଖ୍ୟାପନ କରିଛି । ମନମାୟା ଅନୁଯାୟୀ ଶ୍ରୀରାମ,

୧) ସର୍ବଜନ ମୋହିପାରିନ୍ତି ସେ ହରୀ ।
୨) ଯାହାକଇ ଖଟଇ ସର୍ବଜନ ମନ ।

୩) ତାହାକୁ ଦେଖିଲେ ସର୍ବଜନ ମୋହିହୋଇ ।
୪) ଯାହାକୁ ସକଳଜନ ମୋହିହୋଇ ।
୫) ଯେ ଜଗମୋହନ ତାହାକୁ ଦେଖିଲେ ସେ ବଶ୍ୟ ହୋଇ ।
୬) ଯାହାକୁ ବଶ୍ୟହୋଇ ତାହାକୁ ଭଲ କହି ।

କେବଳ ଏହି ସ୍ଥଳରେ ନୁହେଁ, ଜଗମୋହନ ରାମାୟଣର ଅନ୍ୟ ଅନେକ ସ୍ଥାନରେ ମଧ କବି ଜଗନ୍ନାଥଙ୍କର ମୋହନରୂପ ଏବଂ ତାଙ୍କର ଜଗତକୁ ବଶ କରୁଥିବା ଗୁଣ ଉପରେ ଗୁରୁତ୍ୱ ଦେଇଛନ୍ତି । ସେଥିପାଇଁ ସେ ଜଗନ୍ନାଥ ବା ଜଗମୋହନକୁ ଗ୍ରନ୍ଥର ରଚୟିତା ଭାବେ ଗ୍ରହଣ କରି ନିଜକୁ କେବଳ ଜଣେ ଲେଖନକାର ଭାବେ ଅଭିହିତ କରିଛନ୍ତି ଅଯୋଧ୍ୟାକାଣ୍ଡରୁ ଜଣାଯାଏ, କବିଙ୍କ ହୃଦୟରେ ଜଗନ୍ନାଥ ପ୍ରବେଶ କରିଯିବା ପରେ ଜଗନ୍ନାଥ ଓ କବି ବଳରାମ ଏକ ଓ ଅଭିନ୍ନ ହୋଇଗଲେ ଏବଂ ସେ ଯାହାସବୁ ବର୍ଣ୍ଣନା କରିବାକୁ ଆରମ୍ଭ କଲେ, ସେ ସବୁ ଥିଲା ଜଗନ୍ନାଥଙ୍କ କଥା ।

ବଳରାମଙ୍କ ମତରେ ଶ୍ରୀରାମ କେବଳ ଜଗନ୍ନାଥଙ୍କ ସପ୍ତମ ଅବତାର ନୁହନ୍ତି, ସେ ସ୍ୱୟଂ ଜଗନ୍ନାଥ । ଶ୍ରୀରାମଙ୍କ ବିଭିନ୍ନ ନାମ ମଧ୍ୟରେ କବି ଜଗନ୍ନାଥଙ୍କ ନାମ ଗଣନା କରିଛନ୍ତି ବୋଲି ନୁହେଁ, ଶ୍ରୀରାମଙ୍କ ଜୀବନର ବହୁ ପ୍ରସିଦ୍ଧ ଘଟଣାକୁ ସେ ଜଗନ୍ନାଥଙ୍କ ବିଶିଷ୍ଟ ପର୍ବ ସବୁ ସହ ସଂପୃକ୍ତ କରିଛନ୍ତି । ଶ୍ରୀରାମଙ୍କ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ କବିଙ୍କ ମନରେ ରଥଯାତ୍ରାର ଶୋଭା ପ୍ରତିବିମ୍ବିତ କରୁଥିବାବେଳେ ଶ୍ରୀରାମଙ୍କ ବୈକୁଣ୍ଠ ଗମନ କଥା ବର୍ଣ୍ଣନା କଲାବେଳେ କବି ତୁଳନାରେ ହରିଶୟନ ଏକାଦଶୀକୁ ଉଲ୍ଲେଖ କରିଛନ୍ତି । ଏହା ବ୍ୟତୀତ ଆରଣ୍ୟକ କାଣ୍ଡରେ ଶ୍ରୀରାମ ଓ ଜଗନ୍ନାଥଙ୍କ ଅଭିନ୍ନତା ପ୍ରତିପାଦନ କରିବା ପାଇଁ କବି ଗୋଟିଏ ସୁନ୍ଦର ଦୃଶ୍ୟର ଅବତାରଣା କରିଛନ୍ତି । ବନବାସ କାଳରେ ଶ୍ରୀରାମ, ସୀତା ଓ ଲକ୍ଷ୍ମଣ ଭାରତର ବିଭିନ୍ନ ତୀର୍ଥ ପର୍ଯ୍ୟଟନ ଅବସରରେ ଓଡ଼ିଶାର ପୁରୀକ୍ଷେତ୍ରକୁ ଆଗମନ କରିଥିଲେ । ଜଗନ୍ନାଥ ମନ୍ଦିରରେ ପ୍ରବେଶ କରି ଶ୍ରୀରାମ, ସୀତା ଓ ଲକ୍ଷ୍ମଣ ଯଥାକ୍ରମେ, ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ରଙ୍କ ସମ୍ମୁଖରେ ଠିଆହୋଇଯିବା ଫଳରେ ଜଗନ୍ନାଥ ଓ ରାମ, ସୁଭଦ୍ରା ଓ ସୀତା, ବଳଭଦ୍ର ଓ ଲକ୍ଷ୍ମଣ ମିଶି ଏକାକାର ହୋଇଗଲେ । ବଳରାମ ଏହି ଦୃଶ୍ୟରେ ଜଗନ୍ନାଥ ଓ ରାମଙ୍କୁ ଅଭିନ୍ନଭାବେ ପ୍ରମାଣିତ କରିଛନ୍ତି । ଜଗନ୍ନାଥଙ୍କ ମୋହନ ରୂପ କେବଳ ଯେ ଲୋକଙ୍କୁ ମୁଗ୍ଧ କରିପାରୁଥିଲା ତା' ନୁହେଁ, ଏହା ଜଗତର ହିତ ଅର୍ଥାତ୍ ମଙ୍ଗଳ ସାଧନ କରୁଥିଲା । ଏହା କବିଙ୍କୁ ମୁକ୍ତ କରିବା ସଙ୍ଗେ ସଙ୍ଗେ ସାଧାରଣ ଜନତାଙ୍କୁ ଧର୍ମ, ଅର୍ଥ କାମ ଓ ମୋକ୍ଷ ପ୍ରଦାନ କରୁଥିଲା । ଭାମହ ତାଙ୍କ

'କାବ୍ୟାଳଙ୍କାର ସୂତ୍ର' ଗ୍ରନ୍ଥରେ କାବ୍ୟର ବିଶିଷ୍ଟ ଗୁଣଭାବେ 'ଚତୁର୍ବର୍ଗ ସାଧନା'କୁ ଗ୍ରହଣ କରିଛନ୍ତି । କବି ମଧ୍ୟ ଜଗମୋହନ ରାମାୟଣରେ ଲୋକଙ୍କର ପାପ ଧ୍ୱଂସ କରିବା, ଲୋକଙ୍କୁ ମୁଗ୍ଧ କରିବା ମଙ୍ଗଳ ଦାନ କରିବା ପ୍ରଭୃତି ଗୁଣ ସହ ଚତୁର୍ବର୍ଗ ସାଧନା ଗୁଣକୁ ମିଶାଇ ଏହି ଗ୍ରନ୍ଥର ମହନୀୟତା ବୃଦ୍ଧି କରିଛନ୍ତି ।

ବଳରାମ ଦାସଙ୍କ ଜଗମୋହନ ରାମାୟଣ ରଚନାବେଳକୁ ତାଙ୍କ ଆଗରେ ସଂସ୍କୃତ ପ୍ରାକୃତ ଓ ଅପଭ୍ରଂଶର ବହୁ ଗ୍ରନ୍ଥସହ ଓଡ଼ିଆରେ ଥିଲା ସାରଳା ଦାସଙ୍କ ମହାଭାରତ ଓ ବିଚିତ୍ର ରାମାୟଣ । ସାରଳା ଦାସ ଉଭୟ ମହାଭାରତ ଓ ରାମାୟଣରେ ନୂଆକଥା ସୃଷ୍ଟି କରିବାପାଇଁ ଗୁରୁତ୍ୱ ପ୍ରଦାନ କରୁଥିଲେ । ସେଥିପାଇଁ ସେ ନିଜ ସମାଜ ଓ ଚାରିପଟରେ ଥିବା ଲୋକଙ୍କ କଥାକୁ ଶୁଣି ସେଥିରେ ନିଜ ଆଦର୍ଶ ଓ କଳ୍ପନା ମିଶାଇ ଶାସ୍ତ୍ରୀୟ କଥା ସବୁକୁ ନବକଳେବର ଦେଉଥିଲେ । ସାରଳା ଦାସ ଥିଲେ ଲୋକକବି ଏବଂ ସେ ପୁରୀ ଓ କଟକଠାରୁ ଦୂରରେ ଏକ ଗ୍ରାମରେ ବାସ କରୁଥିଲେ । ବଳରାମ ଦାସ ଥିଲେ ପୁରୀବାସୀ ଓ ମନ୍ତ୍ରୀଙ୍କ ପୁତ୍ର । ଗାଁଲୋକଙ୍କ ଅପେକ୍ଷା ସେନା, ସାମନ୍ତ, ପଣ୍ଡା, ପଣ୍ଡିତ, ପଡ଼ିହାରୀ ଓ ବୈଷ୍ଣବଙ୍କ ସହ ତାଙ୍କର ମିଶିବାର ସୁବିଧା ବେଶୀ ଥିଲା । ସେତେବେଳେ ଯେଉଁମାନେ ରାଜଦରବାର ସହ ସଂପୃକ୍ତ ଥିଲେ, ସେମାନେ ପ୍ରାକୃତ ଭାଷା ଅପେକ୍ଷା ସଂସ୍କୃତକୁ ବିଶେଷ ଆଦର କରୁଥିଲେ । ଆଧୁନିକ ଯୁଗପରି ସେତେବେଳେ ସହର ଓ ଗ୍ରାମ ମଧ୍ୟରେ ଏତେ ପାର୍ଥକ୍ୟ ନଥିଲେ ବି ସହରରେ ଗ୍ରାମ ଅପେକ୍ଷା ସଂସ୍କୃତ ଶାସ୍ତ୍ରସବୁର ଆଲୋଚନା ଅଧିକ ହେଉଥିବା ସ୍ୱାଭାବିକ । ବଳରାମଙ୍କ ଗ୍ରନ୍ଥରାଜିକୁ ଅନୁଶୀଳନ କଲେ ଜଣାଯାଏ ଯେ ସେ ସଂସ୍କୃତରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ତାଙ୍କ ରଚିତ ଉଦ୍ଧବଗୀତା ଓ ଶ୍ରୀମଦ୍‌ଭଗବତ୍ ଗୀତାର ଅନୁବାଦ ଏହାର ପ୍ରମାଣ । ସେ ଯେଉଁଭାବେ ଏସବୁର ଅନୁବାଦ କରିଛନ୍ତି, ସେଥିରୁ ସେ ସଂସ୍କୃତ ଭାଷାରେ ବିଶେଷ ପାରଙ୍ଗମ ଥିବା ଜଣାଯାଏ । ଜଗମୋହନ ରାମାୟଣରେ ମଧ୍ୟ ଏପରି ବହୁତ ପଦ ମିଳେ ଯାହାକି ବାଲ୍ମୀକି ରାମାୟଣର ଆକ୍ଷରିକ ଅନୁବାଦ । ସେ ଚାହିଁଥିଲେ ରାମାୟଣକୁ ଓଡ଼ିଆରେ ଅନୁବାଦ ବି କରିପାରିଥାନ୍ତେ । କିନ୍ତୁ ମହାକବି ସାରଳା ଦାସଙ୍କ ପରି ଲୋକଙ୍କୁ ନୂଆକଥା ଶୁଣାଇବାର ମୋହ ତାଙ୍କୁ ମଧ୍ୟ ଗ୍ରାସ କରିଥିଲା । ସେଥିପାଇଁ ସେ ଅନୁବାଦ ନକରି ସ୍ୱତନ୍ତ୍ରଭାବେ ରାମାୟଣ ରଚନା କରିବା ପାଇଁ ମନସ୍ଥ କଲେ । ସାରଳା ଦାସଙ୍କ ଆଦର୍ଶକୁ ଗ୍ରହଣ କରିଥିଲେହେଁ ସାରଳା ଦାସଙ୍କ ପରି ସେ ସ୍ୱାଧୀନ ନଥିଲେ । ପିଲାଦିନୁ ପଣ୍ଡିତଙ୍କ ପାଖରେ ବସିବା ଫଳରେ ଏବଂ ସଂସ୍କୃତ ଶାସ୍ତ୍ରସବୁ ଅଧ୍ୟୟନ କରିଥିବା ଯୋଗୁ ସେ ନିଜକୁ ସଂସ୍କୃତ ଶାସ୍ତ୍ରସବୁର ପ୍ରଭାବରୁ ମୁକ୍ତ କରିପାରିଲେ ନାହିଁ । ସଂସ୍କୃତ ଭାଷାରେ ରଚିତ ବିଭିନ୍ନ ଶାସ୍ତ୍ର ଓ ପୁରାଣକୁ ବାଲ୍ମୀକି

ରାମାୟଣ ସହ ମିଶାଇ ସେ କଥାର ନୂଆରୂପ ଦେଇଥିଲେ । ଜଗମୋହନ ରାମାୟଣର ପ୍ରାୟ ପ୍ରତ୍ୟେକ ଉପାଖ୍ୟାନରେ ବଳରାମଙ୍କର ଏହି ପ୍ରବୃତ୍ତି ବିଦ୍ୟମାନ ।

(୯) ବଳରାମ ଥିଲେ ଜଗନ୍ନାଥଙ୍କର ଅନନ୍ୟ ଭକ୍ତ । ରାମାୟଣ ରଚନା କରିବାକୁ ଇଚ୍ଛାକଲାବେଳେ ସେ ଜଗନ୍ନାଥଙ୍କୁ ପାଖଛଡ଼ା କରିବାକୁ ଚାହିଁନଥିଲେ । ତାଙ୍କ ରାମାୟଣ ରଚନାର ଦୁଇଟି ଉଦ୍ଦେଶ୍ୟ ଥିଲା । ପ୍ରଥମ ହେଲା, ନିଜ ଜୀବନକୁ ସାର୍ଥକ କରିବା, ଦ୍ୱିତୀୟ ହେଲା ସଂସ୍କୃତ ଭାଷା ନଜାଣିଥିବା ଅଗଣିତ ଜନତାଙ୍କ ନିକଟରେ ରାମାୟଣ ପରି ମହାନ୍‌ଗ୍ରନ୍ଥକୁ ପହଞ୍ଚାଇବା । କିନ୍ତୁ ସେତେବେଳକାର କବିମାଙ୍କର ଏହା ଦୃଢ଼ ବିଶ୍ୱାସ ଥିଲା ଯେ ଏପରି କାମ କରିବା ମଣିଷ ଦ୍ୱାରା ସମ୍ଭବ ନୁହେଁ । ଭଗବାନ୍ କୃପା ନକଲେ ଏସବୁ କାମ ହୋଇପାରେ ନାହିଁ । ବଳରାମ ସେଥିପାଇଁ କହିଲେ,

ତୁ ସେ ନାରାୟେଣ ଶରଣ ରଖନ୍ତା
କୀଟୁ ବ୍ରହ୍ମ ସବୁହିଂ ଏକଇ ଦେଖନ୍ତା ।
ଧନୀ ନିର୍ଦ୍ଧନୀ ଅବଳ ବଳ ନାହିଂ
ତୋହୋର ଆଗେ ସ୍ୱାମି ଜପମନ୍ତ କାହିଂ ।

ବଳରାମ ଏହି ଚାରୋଟି ପଂକ୍ତିରେ ଜଗନ୍ନାଥ ଧର୍ମର ପ୍ରକୃତ ସ୍ୱରୂପକୁ ସ୍ପଷ୍ଟଭାବେ ପ୍ରକାଶ କରିପାରିଛନ୍ତି । ଜଗନ୍ନାଥ କେବଳ ଶରଣ ରଖନ୍ତା ନୁହନ୍ତି । ସେ କୀଟଠାରୁ ଆରମ୍ଭକରି ମହାନ ବ୍ରହ୍ମ ପର୍ଯ୍ୟନ୍ତ ସମସ୍ତଙ୍କୁ ସମାନଚକ୍ଷୁରେ ଦେଖନ୍ତି । ତାଙ୍କ ନିକଟରେ ଧନୀ ଓ ନିର୍ଦ୍ଧନର ପାର୍ଥକ୍ୟ ନାହିଁ । ଦୁର୍ବଳ ଓ ଶକ୍ତିଶାଳୀ ଲୋକ ମଧ ତାଙ୍କ ଦୃଷ୍ଟିରେ ସମାନ । କେବଳ ବ୍ରାହ୍ମଣମାନେ ମନ୍ତ୍ର ବଳରେ ବା ଜପଦ୍ୱାରା ଯେ ତାଙ୍କୁ ବଶ କରିପାରିବେ, ତା' ବି ନୁହେଁ । ଜଗନ୍ନାଥଙ୍କର ଏହି ଅଲୌକିକ ମହିମା ସଂପର୍କରେ କବି ସଚେତନ ଥିବା ହେତୁ ସେ ଜଗନ୍ନାଥଙ୍କଠାରେ ନିଜକୁ ସମର୍ପଣ କରି କହିଛନ୍ତି,

ମୁହିଂ ତୋହର ଶରଣ ପଶିଲି ଜଗନ୍ନାଥ
ଉଦ୍ଧରି ଧର ମୋତେ ଶଙ୍ଖ ଚକ୍ର ହସ୍ତ ।
ତୁ ଦେବ ଉଦ୍ଧାରଣ ବୋଲିଣ ଭଜିଲି
ଭୟେ ନକରିଣ ତୋରେ ଶରଣ ପଶିଲି ।

ଜଗତର ସୃଷ୍ଟି କର୍ତ୍ତା ବ୍ରହ୍ମା ଯେଉଁ ନାରାୟଣଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲେ

ଭୟରେ ଥରହର ହୁଅନ୍ତି, ମହାଯୋଗୀ ଶିବ ଯାହାଙ୍କ ନିକଟରେ ଯୋଗସାଧନାରେ ହାରିଯାନ୍ତି, ଦେବତାମାନେ ବିପଦ ପଡ଼ିଲେ ବିପଦରୁ ଉଦ୍ଧାର ପାଇବା ପାଇଁ ଯାହାଙ୍କଠାରେ ଶରଣ ପଶନ୍ତି, ସେହି ଜଗନ୍ନାଥ ବଳରାମଙ୍କର ଅତି ଆପଣାର ଲୋକ ହୋଇଗଲେ । ଭଗବାନଙ୍କର ଦୟା ନଥିଲେ ଏହା ସହଜ ହୁଏ ନାହିଁ । ସେଥିପାଇଁ କବି ଲେଖିଛନ୍ତି,

ଯାହାଙ୍କଙ୍କ ସୁଦୟା କରୁ ବ୍ରହ୍ମରାଶି
ସେ ତୋହୋର ଚରଣେ ଶରଣ ପଶଇ ଆସି ।

ଭଗବାନଙ୍କ ଦୟା ଓ କବିଙ୍କ ସଂପୂର୍ଣ୍ଣ ଆତ୍ମସମର୍ପଣ ଫଳରେ ଦାରୁବ୍ରହ୍ମ ଜଗନ୍ନାଥ ବିଗଳିତ ହୋଇଗଲେ । କବିଙ୍କ ନିବେଦନ ସଫଳ ହେଲା । କବି ସ୍ପଷ୍ଟ ଭାବରେ ଦେଖିଲେ ଜଗନ୍ନାଥ ଆଉ ରତ୍ନସିଂହାସନ ଉପରେ ନିଶ୍ଚଳ ଚକ୍ଷୁ ଧାରଣ କରି ବସିନାହାନ୍ତି । ତାଙ୍କର ପ୍ରତ୍ୟେକ ଅଙ୍ଗରେ ଜଗତ ଉଦ୍ଧାରଣର ସଂକେତ ଝଳମଳ ହୋଇ ପ୍ରକାଶ ପାଉଛି । ସେତେବେଳେ ବଳରାମଙ୍କୁ ଜଣାଗଲା ସତେଯେପରି ଜଗନ୍ନାଥ,

ଦୁଇବାହୁ ଟେକିଣ ଯାଚନ୍ତି ଶରଣ
ଯେବଣ ନାମ ଗୋଟି ଜଗତ ଉଦ୍ଧାରଣ ।
ଦାସ ଜନକଇ ଦେଖିଲେ ହସନ୍ତି
ତେଣୁ ସେ ସୁରଙ୍ଗ ଅଧର ବିସନ୍ତି ।
ଚକ୍ଷୁନିଚଳ କରିଣ ଦେବ ଚାହିଁ
ନପୁଣ ମୋହୋର ଭଗତ ଦୁଃଖ ପାଇ ।

ଜଗନ୍ନାଥଙ୍କର ଏହି ଦୟାସାଗର ରୂପ ବଳରାମଙ୍କୁ ଏପରି ଭାବେ ମୁଗ୍ଧ କରିଥିଲା ଯେ ବଳରାମ ନିଜକୁ ଜଗନ୍ନାଥଙ୍କର ପରିବାରର ଜଣେ ଲୋକଭାବେ ଗ୍ରହଣ କରିନେଇଥିଲେ । ସେଥିପାଇଁ ସେ କହିଥିଲେ,

ଜଗନ୍ନାଥ ପିତା ମୋର ଜଗନ୍ନାଥ ମାତା ।

ମଧ୍ୟକାଳୀନ ସନ୍ଥ ପରଂପରାରେ ଭଗବାନଙ୍କ ସହ ଆତ୍ମୀୟତା ପ୍ରତିଷ୍ଠା କରିବା ଏକ ବିଶିଷ୍ଟ ଗୁଣଭାବେ ପ୍ରକାଶିତ ହୋଇଥିଲା । ବଳରାମଙ୍କ ପରି କବୀର, ନାନକ, ଦାଦୁ ପରି ସନ୍ଥ କବିମାନେ ଭଗବାନଙ୍କୁ ନିଜଲୋକ ରୂପେ ଗ୍ରହଣ କରିଥିଲେ । ଜଗନ୍ନାଥଙ୍କ ସହ ବଳରାମଙ୍କର ଏହି ଆତ୍ମୀୟତା ଜଗମୋହନ ରାମାୟଣରେ ବହୁ ସ୍ଥଳରେ ପ୍ରକାଶିତ ।

ବିଶେଷକରି ଲଙ୍କାକାଣ୍ଡରେ ରାମରାବଣ ଯୁଦ୍ଧ ବର୍ଣ୍ଣନା ପୂର୍ବରୁ, ଉତ୍ତରାକାଣ୍ଡରେ ସୀତାଙ୍କ ନିର୍ବାସନ ପୂର୍ବରୁ ସୀତାଙ୍କ କଷଣ ବର୍ଣ୍ଣନା କରିବାକୁ ଗଲାବେଳେ ସେ ଜଗନ୍ନାଥଙ୍କର ସାହାଯ୍ୟ ଲୋଡ଼ିଛନ୍ତି । ସେତେବେଳର ବର୍ଣ୍ଣନାରୁ ଜଣାଯାଏ ସତେଯେପରି କବି ବଳରାମ ଜଗନ୍ନାଥଙ୍କ ସହ ସିଧାସଳଖ କଥାବର୍ତ୍ତା କରୁଛନ୍ତି । ଉଦ୍ଧବ ଗୀତା ଅନୁବାଦ କରିବା ପୂର୍ବରୁ ମଧ୍ୟ ସେ ଜଗନ୍ନାଥଙ୍କ ସହ ସିଧାସଳଖ କଥାବାର୍ତ୍ତା କରୁଥିବାର ଦୃଶ୍ୟ ଉପଲବ୍ଧ ହୁଏ । ଏହିସବୁ ବର୍ଣ୍ଣନାକୁ ଦେଖି ସାଧାରଣ ଲୋକଙ୍କ ମନ ମଧ୍ୟରେ ଏହି ବିଶ୍ୱାସ ଦୃଢ଼ୀଭୂତ ହୋଇଥିଲା ଯେ କବି ବଳରାମ ଜଗନ୍ନାଥଙ୍କୁ ସଂପୂର୍ଣ୍ଣଭାବେ ବଶ କରିପାରିଥିଲେ । ସେ ଯାହା ଚାହୁଁଥିଲେ ଜଗନ୍ନାଥଙ୍କ ଦ୍ୱାରା ତାହା କରାଇନେଇ ପାରୁଥିଲେ । ଏହି ବିଶ୍ୱାସ ଏତେ ପ୍ରଚାରିତ ହୋଇଥିଲା ଯେ ଷୋଡ଼ଶ ଶତାବ୍ଦୀର ଶେଷଭାଗରେ ଥିବା ବଙ୍ଗୀୟ ବୈଷ୍ଣବ ଦେବକୀନନ୍ଦନ ବୈଷ୍ଣବ ବନ୍ଦନା ରଚନା କଲାବେଳେ ଭକ୍ତକବି ବଳରାମଙ୍କର ମହନୀୟତା ଗାନକରି ଲେଖିଲେ,

ବନ୍ଦ ଉଡ଼ିୟା ବଳରାମ ଦାସ ମହାଶୟ
ଜଗନ୍ନାଥ ବଳରାମ ଯାର ବଶହୟ ।

କବି ବଳରାମଙ୍କର ମହିମା ଦିନକୁଦିନ ପ୍ରସାରିତ ହେବା ଫଳରେ ପରବର୍ତ୍ତୀ ଯୁଗରେ ତାଙ୍କୁ ନେଇ ବହୁ ଅଲୌକିକ କାହାଣୀ ସୃଷ୍ଟି ହୋଇପାରିଥିଲା । ଷୋଡ଼ଶ ଶତାବ୍ଦୀର କବି ମାଧବ ପଟ୍ଟନାୟକ ବଳରାମ ଦାସଙ୍କର ମହନୀୟ ପ୍ରତିଭାର ପ୍ରଶଂସା କରି ତାଙ୍କ ତିରୋଧାନ ପରେ ତାଙ୍କୁ ଏକ ବିଶାଳ ବଟବୃକ୍ଷ ସହିତ ତୁଳନା କରିଥିଲେ । ପ୍ରବଳ ପବନ ଆଘାତରେ ବଟବୃକ୍ଷ ଉପୁଡ଼ି ପଡ଼ିଲେ ଯେପରି ତା'ର ଆଶ୍ରିତମାନେ ନିରାଶ୍ରୟ ହୋଇଯାନ୍ତି, ସେହିପରି ବଳରାମଙ୍କ ତିରୋଧାନ ପରେ ବହୁ ବର୍ଷ ଧରି ତାଙ୍କ ଆଶ୍ରୟରେ ଶାନ୍ତି ଲାଭ କରୁଥିବା ଅଗଣିତ ଜନତା ନିରାଶ୍ରୟ ହୋଇଯାଇଥିଲେ ।

ରାମାୟଣ ରଚନା କଲାବେଳକୁ ବଳରାମ କେବଳ ଯେ ଜଗନ୍ନାଥଙ୍କର ଆଶ୍ରୟ ବା କରୁଣା କାମନା କରିଥିଲେ ତା' ନୁହେଁ, ସେ ବାଲ୍ମୀକିଙ୍କର ପ୍ରଚଣ୍ଡ ପ୍ରତିଭା ସଂପର୍କରେ ସଚେତନ ଥିଲେ । ବାଲ୍ମୀକିଙ୍କ ରାମାୟଣ ଖ୍ରୀ: ପୂ: କୌଣସି ଏକ ଶତାବ୍ଦୀରେ (ସାଧାରଣତଃ ଖ୍ରୀ: ପୂ: ତୃତୀୟ ଶତାବ୍ଦୀକୁ ଏହାର ରଚନାକାଳ ରୂପେ ସ୍ଥିର କରାଯାଇଛି ।) ରଚିତ ହୋଇ ଯୁଗ ଯୁଗ ଧରି ଭାରତୀୟ ସଭ୍ୟତା ଓ ସଂସ୍କୃତିକୁ ପ୍ରଭାବିତ କରିଆସିଛି । ଭାରତୀୟ ଆଦର୍ଶ କହିଲେ ବାଲ୍ମୀକିଙ୍କ ଦ୍ୱାରା ପ୍ରଚାରିତ ଶ୍ରୀରାମଙ୍କ ଆଦର୍ଶକୁ ହିଁ ଗ୍ରହଣ କରାଯାଇଥାଏ । ଭାରତୀୟମାନଙ୍କର ରୀତିନୀତି ଚାଲିଚଳଣ ଓ ଆଚାର ବ୍ୟବହାର ସବୁ ବାଲ୍ମୀକିଙ୍କ ରାମାୟଣ

ଦ୍ୱାରା ନିୟନ୍ତ୍ରିତ ହେଉଥିଲା । ରାମାୟଣ ରଚନା କରିବାକୁ ଗଲାବେଳେ ବାଲ୍ମୀକିଙ୍କୁ ଅସ୍ୱୀକାର କରିବା କୌଣସି ଭାରତୀୟ କବି ପକ୍ଷରେ ସମ୍ଭବ ନଥିଲା । ସେଥିପାଇଁ କବି ବଳରାମ ବାଲ୍ମୀକିଙ୍କୁ ଏକ ବିଶାଳ ପର୍ବତ ସହିତ ତୁଳନା କରି ନିଜକୁ ଏକ ସୂଚୀ ସହ ତୁଳନା କରିଛନ୍ତି । ଯେପରି ସୂଚୀଦ୍ୱାରା ପର୍ବତକୁ ଟାଳିବା ସମ୍ଭବ ନୁହେଁ, ସେହିପରି ସଂସ୍କୃତରେ ରଚିତ ବାଲ୍ମୀକିଙ୍କ ରାମାୟଣକୁ ଓଡ଼ିଆ ଭାଷାରେ ରୂପାନ୍ତରିତ କରିବା ସହଜ ନୁହେଁ । କବିଙ୍କର ଏହି ଅକ୍ଷମତା ଅଯୋଧ୍ୟାକାଣ୍ଡର ପ୍ରାରମ୍ଭରେ ଏବଂ ସୁନ୍ଦରାକାଣ୍ଡରେ ବାରମ୍ବାର ଦେଖିବାକୁ ମିଳିଥାଏ । ଏହାକୁ ଏକ ଅସମ୍ଭବ କଥା ଭାବି ସେ ଯେଉଁଭାବେ ରାମାୟଣ ରଚନା କରିବାକୁ ଚାହିଁଲେ ତା'ର ଏକ ସଂକ୍ଷିପ୍ତ ଧାରଣା ଅଯୋଧ୍ୟାକାଣ୍ଡରେ ଦେଖିବାକୁ ମିଳେ । ସେଥିରେ ସେ କହିଛନ୍ତି-

ଲକ୍ଷେ କୋଟି ଚରିତ୍ର ଥୋକାଏ ଯିବି କହି ।

ଏବଂ ତାଙ୍କ ରାମାୟଣକୁ ଅନୁଶୀଳନକଲେ ତାଙ୍କ କଥାର ସତ୍ୟତା ଉପଲବ୍ଧି କରିହୁଏ । ବଳରାମ ପ୍ରାୟ ପ୍ରତ୍ୟେକ କାଣ୍ଡରେ ପ୍ରତ୍ୟେକ କଥାରେ ନୂତନ ଉପାଦାନସବୁ ସଂଯୋଜନା କରିଥିଲେହେଁ, ନିମ୍ନରେ କେବଳ ଆଦିକାଣ୍ଡସ୍ଥିତ କେତେକ କଥାର ବିଶ୍ଳେଷଣ କରାଯାଇଛି ।

**କ) ଋଷ୍ୟଶୃଙ୍ଗ ଉପାଖ୍ୟାନ :** ବାଲ୍ମୀକି ରାମାୟଣର ବାଳକାଣ୍ଡର ନବମ ଓ ଦଶମ ସର୍ଗରେ ଋଷ୍ୟଶୃଙ୍ଗଙ୍କ କଥା ବର୍ଣ୍ଣିତ । ନବମ ସର୍ଗରେ ଏହାର ଏକ ସଂକ୍ଷିପ୍ତ ରୂପ ଥିଲେହେଁ ଦଶମ ସର୍ଗରେ ଏହା ବିସ୍ତୃତ ଭାବେ ବର୍ଣ୍ଣିତ । ଏହି ଉପାଖ୍ୟାନର ସାରକଥା ହେଲା : ଅଙ୍ଗଦେଶର ରାଜା ଲୋମପାଦ ଧର୍ମ ଲଂଘନ କରିବାରୁ ରାଜ୍ୟରେ ଘୋର ଅନାବୃଷ୍ଟି ହେଲା । ବ୍ରାହ୍ମଣମାନଙ୍କ ପରାମର୍ଶକ୍ରମେ କେତେକ ବେଶ୍ୟା ବିଭାଣ୍ଡକଙ୍କ ଆଶ୍ରମକୁ ଯାଇ ଋଷ୍ୟ ଶୃଙ୍ଗଙ୍କୁ ଭୁଲାଇ ନିଜ ରାଜ୍ୟକୁ ନେଇଆସି ଥିଲେ । ଋଷ୍ୟଶୃଙ୍ଗଙ୍କ ଆଗମନ ଫଳରେ ରାଜ୍ୟରେ ବର୍ଷାହୋଇ ଅନାବୃଷ୍ଟି ଦୂରହେଲା । ରାଜା ଏଥିରେ ଆନନ୍ଦିତ ହୋଇ ନିଜ କନ୍ୟା ଶାନ୍ତାଙ୍କୁ ଋଷ୍ୟଶୃଙ୍ଗଙ୍କୁ ପ୍ରଦାନ କଲେ ।

ବଳରାମ ଦାସ ତାଙ୍କ ରାମାୟଣରେ ଏହି କଥାକୁ ପ୍ରାୟ ଗ୍ରହଣ କରିଥିଲେହେଁ ଏହାର ପ୍ରତ୍ୟେକ ଅଂଶରେ କେତେକ ନୂଆ କଥାର ସଂଯୋଜନା କରିଛନ୍ତି । ବିଶେଷ ଅନୁଶୀଳନ ପାଇଁ ଋଷ୍ୟଶୃଙ୍ଗକଥାକୁ ଚାରୋଟି ବିଭାଗରେ ବିଭକ୍ତ କରାଯାଇପାରେ ।

୧ ) ଋଷ୍ୟଶୃଙ୍ଗଙ୍କ ଜନ୍ମ

୨ ) ଅଙ୍ଗଦେଶରେ ଅନାବୃଷ୍ଟିର କାରଣ

୩)   ଜରତା, କାମମୋହିନୀ ପ୍ରଭୃତି ବେଶ୍ୟାଙ୍କ ନୌକାଯାତ୍ରା ଓ ଋଷ୍ୟଶୃଙ୍ଗ ପ୍ରଲୋଭନ ।

୪)   ଶାନ୍ତା ଓ ଋଷ୍ୟଶୃଙ୍ଗଙ୍କ ବିଭାବ ।

**୧) ଋଷ୍ୟଶୃଙ୍ଗଙ୍କ ଜନ୍ମ :**

ଋଷି ବିଭାଣ୍ଡକ ତପସ୍ୟା କରୁଥିବାବେଳେ ଉର୍ବଶୀ ସ୍ନାନ ଉଦ୍ଦେଶ୍ୟରେ ନିକଟସ୍ଥ ପୁଷ୍କରିଣୀରେ ପ୍ରବେଶ କଲେ । ସ୍ନାନରତା ଉର୍ବଶୀର ଅପରୂପ ସୌନ୍ଦର୍ଯ୍ୟ ବିଭାଣ୍ଡକଙ୍କ ମନକୁ ଚଞ୍ଚଳ କରିଦେଲା । ସେ କ୍ଷଣକ ପାଇଁ ତପଭ୍ରଷ୍ଟ ହୋଇ ବିଚଳିତ ହୋଇଗଲେ । ଫଳରେ ତାଙ୍କ ରେତ ସ୍ଖଳିତ ହେଲା । ଋଷି ସେହି ରେତକୁ ସରୋବରର ଜଳରେ ନିକ୍ଷେପ କଲେ । ଅଭିଶପ୍ତା ସ୍ୱର୍ଗବେଶ୍ୟା ମଦନିକା ମୃଗୁଣୀ ରୂପରେ ସେହି ସ୍ଥାନରେ ବିଚରଣ କରୁଥିଲା । ସେ ପୁଷ୍କରିଣୀକୁ ଜଳପାନ କରିବାକୁ ଯାଇ ସେଥିରେ ନିକ୍ଷେପ ହୋଇଥିବା ରେତକୁ ପାନକରି ଗର୍ଭବତୀ ହେଲା ଏବଂ ଶେଷରେ ସେ ହେଲା ଋଷ୍ୟଶୃଙ୍ଗଙ୍କ ଜନ୍ମଦାତ୍ରୀ । ଦେବତାମାନଙ୍କ ଦ୍ୱାରା ଆଦିଷ୍ଟ ହୋଇ ବିଭାଣ୍ଡକ ସେହି ସନ୍ତାନକୁ ପୁତ୍ରରୂପେ ପାଳନ କଲେ ।

ବଳରାମଙ୍କ ବର୍ଣ୍ଣିତ ଏହି ଉପାଖ୍ୟାନ ବାଲ୍ମୀକି ରାମାୟଣରୁ ଅନୁସୃତ ନୁହେଁ । ସଂସ୍କୃତ ମହାଭାରତ ଦ୍ୱାରା ପ୍ରଭାବିତ ହୋଇ ସାରଳା ଦାସ ତାଙ୍କ ମହାଭାରତରେ ପ୍ରଥମ ଏହି ଉପାଖ୍ୟାନର ଅବତାରଣା କରିଥିଲେ । ବଳରାମ ମଧ୍ୟ ଏ ବିଷୟରେ ସଂସ୍କୃତ ମହାଭାରତ ଦ୍ୱାରା ପ୍ରଭାବିତ । ବଙ୍ଗଳା ରାମାୟଣରେ କୃତ୍ତିବାସ ମଧ୍ୟ ଉର୍ବଶୀ ଉପାଖ୍ୟାନର ସଂଯୋଜନା କରିଛନ୍ତି । ତେବେ ବଳରାମ ଅପରୂପା ସୁନ୍ଦରୀ ଉର୍ବଶୀର ନଗ୍ନ ସୌନ୍ଦର୍ଯ୍ୟର ଯେଉଁ ବିସ୍ତୃତ ବର୍ଣ୍ଣନା ଦେଇଛନ୍ତି ଏବଂ ସେହି ନଗ୍ନ ସୌନ୍ଦର୍ଯ୍ୟ ଦର୍ଶନରେ ବିଭାଣ୍ଡକଙ୍କ ମାନସିକ ଅବସ୍ଥାର ଯେଉଁ ଚିତ୍ର ଦେଇଛନ୍ତି, ତାହା ତାଙ୍କର ନିଜସ୍ୱ । ସଂସ୍କୃତ ଓ ଓଡ଼ିଆ ମହାଭାରତ ଏବଂ କୃତ୍ତିବାସ ରାମାୟଣରେ ଏହା ଦେଖିବାକୁ ମିଳେନାହିଁ । ଏହି ପ୍ରସଙ୍ଗରେ ଇନ୍ଦ୍ରଙ୍କର ଋଷ୍ୟଶୃଙ୍ଗଙ୍କୁ ବରଦାନ ସଂସ୍କୃତରେ ନାହିଁ । ସାରଳା ଦାସଙ୍କ ମତରେ ଋଷ୍ୟଶୃଙ୍ଗଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ତାଙ୍କ ରୁକ୍ଷଶରୀରକୁ ଶାନ୍ତ କରିବା ପାଇଁ ଇନ୍ଦ୍ର ଚାରିମେଘଙ୍କୁ ଆଦେଶ ଦେଇଥିଲେ । ଇନ୍ଦ୍ରଙ୍କ ଆଦେଶରେ ସେମାନେ ଛତ୍ରାକାରରେ ଋଷ୍ୟଶୃଙ୍ଗଙ୍କ ଉପରେ ରହି ତାଙ୍କ ରକ୍ଷ ଶରୀରକୁ ରକ୍ଷାକଲେ । ବଳରାମ ଏହାର ଉଲ୍ଲେଖ କରି ଲେଖିଛନ୍ତି

ଶରୀର ତୀକ୍ଷ ମୋର ଅଟଇ ସୁରପତି
ଲୋଡ଼ିଲେ ବୃଷ୍ଟି ତୁ କରିବୁ ତଡ଼ିତି ।
ଅସ୍ତୁ ହେଉ ବୋଲି ଗଲାକ ବଜ୍ରଧର
ଆନନ୍ଦ ହୋଇଲାକ ଋଷ୍ୟଶୃଙ୍ଗ କୁମର ।

### ୨) ଅଙ୍ଗଦେଶରେ ଅନାବୃଷ୍ଟିର କାରଣ :

ବାଲ୍ମୀକି ଏହି ପ୍ରସଙ୍ଗରେ ଉଲ୍ଲେଖକରି କହନ୍ତି, "ତସ୍ୟ ବ୍ୟତିକ୍ରମାତ୍ ରାଜ୍ଞୋ ଭବିଷ୍ୟତି ସୁଦାରୁଣ ।" ୧/୧୯-୮ ।

ଧର୍ମର ବ୍ୟତିକ୍ରମକୁ ବଳରାମ ବ୍ରାହ୍ମଣଙ୍କ ଅବମାନନାରେ ପରିଣତ କରିଛନ୍ତି । ତାଙ୍କ ଅନୁଯାୟୀ ଏକଦା ଲୋମପାଦ ନୃପତି ବ୍ରାହ୍ମଣମାନଙ୍କୁ ଦାନଦେବା ସମୟରେ ଜଣେ ବ୍ରାହ୍ମଣ ଲୋଭ ପରବଶ ହୋଇ ଆହୁରି ମାଗିବାକୁ ରାଜା କ୍ରୋଧାନ୍ୱିତ ହୋଇ ତାଙ୍କୁ ବିତାଡ଼ିତ କରିଥିଲେ । ଏଥିରେ ବ୍ରାହ୍ମଣ ସମାଜ ରାଜାଙ୍କ ଉପରେ ରାଗି ତାଙ୍କୁ ଅଭିଶାପ ଦେଲେ । ଫଳରେ ରାଜ୍ୟରେ ଅନାବୃଷ୍ଟି ହେଲା । ଯେତେ ଯାଗଯଜ୍ଞ କଲେ ବି ବର୍ଷା ହେଲା ନାହିଁ । ବଙ୍ଗୀୟ କବି କୃତ୍ତିବାସଙ୍କ ମତରେ ଲୋମପାଦଙ୍କ କନ୍ୟା ଶାନ୍ତା ଋତୁମତୀ ହୋଇ ପିତାଙ୍କ ଘରେ ଅବିବାହିତା ଅବସ୍ଥାରେ ରହିଥିବାରୁ ଏପରି ଅନାବୃଷ୍ଟି ହୋଇଥିଲା । ଏ କ୍ଷେତ୍ରରେ ମଧ୍ୟ ବଳରାମ ବାଲ୍ମୀକିଙ୍କୁ ଅନୁସରଣ କରିନାହାନ୍ତି ।

### ୩) ଜରତା ଓ କାମମୋହିନୀ ପ୍ରମୁଖ ବେଶ୍ୟାମାନଙ୍କ ନୌକାଯାତ୍ରା ଓ ଋଷ୍ୟଶୃଙ୍ଗ ପ୍ରଲୋଭନ :

ବାଲ୍ମୀକି ଏହି ପ୍ରସଙ୍ଗକୁ ସଂକ୍ଷିପ୍ତ ଭାବରେ ବର୍ଣ୍ଣନା କରି ଲେଖିଛନ୍ତି :

ଶ୍ରୁତ୍ୱା ତୁ ବଚନଂ ତାସାଂ ସର୍ବାସାଂ ହୃଦୟ ତାମମ୍
ତା ମନାୟ ମତିର୍ଚକ୍ରେ ତଂ ଚ ନିନ୍ୟୁା ସ୍ତଥା ସ୍ତ୍ରୟଃ ।
୧-୧୦-୮ ।

ଅର୍ଥାତ୍ ସେମାନଙ୍କର (ବେଶ୍ୟାମାନଙ୍କର) ମଧୁର ବଚନ ଶୁଣି ଋଷ୍ୟଶୃଙ୍ଗ ସେମାନଙ୍କ ସହ ଯିବାକୁ ପ୍ରସ୍ତୁତ ହୋଇଗଲେ ଓ ସେମାନେ ତାଙ୍କୁ ଅଙ୍ଗଦେଶକୁ ନେଇଆସିଲେ ।

ବଳରାମଙ୍କ ବର୍ଣ୍ଣନା ଏହାଠାରୁ ଯେ କେବଳ ବିସ୍ତୃତ, ତା' ନୁହେ, ଏଥିରେ ଥିବା ଜରତା ଓ କାମମୋହିନୀ ନାମ, ନୌକାଯାତ୍ରା, ଋଷ୍ୟଶୃଙ୍ଗଙ୍କ ସହ ବେଶ୍ୟାମାନଙ୍କ ସହବାସ ପ୍ରଭୃତି ପ୍ରସଙ୍ଗ ବାଲ୍ମୀକିରେ ନାହିଁ । ସଂସ୍କୃତ ମହାଭାରତରେ ଏହି ବେଶ୍ୟାର ନାମ ଜରତ୍‌କୁଶା । ସାରଳା ଦାସ ଏହାକୁ ଜରତାକୋସା ଓ ଜରତାରେ ପରିଣତ କଲେ । କୃତ୍ତିବାସ ରାମାୟଣରେ ବେଶ୍ୟାମାନଙ୍କ ଅଧିନାୟକ ଥିଲା ଜଣେ ବୃଦ୍ଧା । କୃତ୍ତିବାସ ଏହାକୁ 'ଜରତୀ' କହିଛନ୍ତି । ଏହାର ମୂଳସୂତ୍ର ମଧ ଜରତା ଶବ୍ଦରେ ଖୋଜାଯାଇପାରେ ।

ନୌକାଯାତ୍ରା ପ୍ରସଂଗ ମଧ ସଂସ୍କୃତ ମହାଭାରତରୁ ଗୃହୀତ । ସେଥିରେ ଏହା 'ନ୍ୟାବ୍ୟାଶ୍ରମ ।' ଉଭୟ ବଳରାମ ଓ କୃତ୍ତିବାସ ଏହି ଯାତ୍ରାର ବର୍ଣ୍ଣନା କରିଥିଲେହେଁ ବଳରାମଙ୍କ ବର୍ଣନାରୁ ଯେଉଁ ଜୀବନ୍ତ ଓ ବାସ୍ତବଦୃଶ୍ୟ ଉପଲଭ୍ୟ ହୁଏ, ତାହା କୃତ୍ତିବାସ ରାମାୟଣରେ ନାହିଁ । ବେଶ୍ୟାମାନଙ୍କ ସହ ଋଷ୍ୟଶୃଙ୍ଗଙ୍କ ସହବାସ ପ୍ରସଙ୍ଗ ମଧ ବାଲ୍ମୀକି ରାମାୟଣରେ ନାହିଁ । ସେମାନେ ଋଷ୍ୟଶୃଙ୍ଗଙ୍କୁ କେବଳ ସେମାନଙ୍କର ସୁନ୍ଦର ରୂପ, ମଧୁରବଚନ ଓ ବ୍ୟବହାର ଦ୍ୱାରା ଭୁଲାଇ ଅଙ୍ଗଦେଶକୁ ନେଇଆସିଥିଲେ । ବଳରାମଙ୍କ ଅନୁଯାୟୀ ଋଷ୍ୟଶୃଙ୍ଗ ଜରତା ଓ କାମମୋହିନୀ ପ୍ରଭୃତି ବାରବନିତାମାନଙ୍କ ସହ ସହବାସରେ ରତହୋଇ ନିଜର ଅଜ୍ଞାତସାରରେ ଅଙ୍ଗଦେଶରେ ପ୍ରବେଶ କରିଥିଲେ । ଅଙ୍ଗଦେଶରେ ପହଞ୍ଚିବାପରେ ଜରତା ପ୍ରମୁଖ ବେଶ୍ୟାମାନେ ସେମାନଙ୍କର ପ୍ରକୃତ ପରିଚୟ ପ୍ରଦାନକରି ଋଷିଙ୍କଠାରୁ କ୍ଷମା ମାଗିଥିଲେ ।

## ୪) ଶାନ୍ତା ପ୍ରସଙ୍ଗ :

ବାଲ୍ମୀକି ରାମାୟଣରେ ଦାକ୍ଷିଣାତ୍ୟପାଠରେ ଶାନ୍ତା ହେଉଛନ୍ତି ଲୋମପାଦଙ୍କ କନ୍ୟା । ଅଥଚ ପୂର୍ବ ଓ ପଶ୍ଚିମୋତ୍ତର ପାଠରେ ସେ ଦଶରଥଙ୍କ ପୁତ୍ରୀ ଓ ଲୋମପାଦଙ୍କ ପାଳିତା କନ୍ୟା । ବଳରାମ ପୂର୍ବ ଓ ପଶ୍ଚିମୋତ୍ତର ପାଠକୁ ଗ୍ରହଣକରି ଋଷ୍ୟଶୃଙ୍ଗ ଓ ଶାନ୍ତାଙ୍କ ବିବାହ ବର୍ଣ୍ଣନାରେ ବିଧି ଓ ଚଳଣିରେ କେତେକ ପାର୍ଥକ୍ୟ ଦେଖାଇଥିଲେହେଁ ମୂଳକଥାର ପରିବର୍ତ୍ତନ କରିନାହାନ୍ତି ।

ଋଷ୍ୟଶୃଙ୍ଗ ଉପାଖ୍ୟାନକୁ ବିଶ୍ଳେଷଣ କରି ଦେଖିଲେ ବଳରାମଙ୍କ ରଚନାର ଦୃଷ୍ଟି କୋଣ କେତେକ ପରିମାଣରେ ସ୍ପଷ୍ଟ ହୋଇଥାଏ । ସେ ସମୟକୁ ମହାଭାରତ, ହରିବଂଶ, ବାୟୁପୁରାଣ, ବୌଦ୍ଧଜାତକ ଲୋକକଥାରେ ଋଷ୍ୟଶୃଙ୍ଗଙ୍କ କଥା ପ୍ରଚାରିତ ହୋଇ ଲୋକପ୍ରିୟ ହୋଇସାରିଥିଲା । ବଳରାମ ଏଥିରେ ନିଜସ୍ୱ କଳ୍ପନା ମିଶାଇ ଏହାକୁ ପରିପୁଷ୍ଟ କରିଛନ୍ତି । ଉର୍ବଶୀ ଓ ଶାନ୍ତାର ରୂପ, ବିଭାଣ୍ଡକଙ୍କ ବିଚ୍ୟୁତି, ବେଶ୍ୟାମାନଙ୍କର ନୌକାଯାତ୍ରା, ପ୍ରଲୋଭନ

କରିବାର ବିଭିନ୍ନ ପ୍ରକ୍ରିୟା ଏବଂ ଶାନ୍ତା ଓ ଋଷ୍ୟଶୃଙ୍ଗଙ୍କ ବିବାହ ପ୍ରଭୃତି ଘଟଣା ବର୍ଣ୍ଣନା କଲାବେଳେ ବଳରାମ ଏକପକ୍ଷରେ ନିଜର ଶାସ୍ତ୍ରୀୟଜ୍ଞାନ ଓ ଅନ୍ୟପକ୍ଷରେ ସାଧାରଣ ଲୋକଙ୍କ ଜିଜ୍ଞାସାକୁ ମନରେ ରଖି ବିଭିନ୍ନ ବର୍ଣ୍ଣନା ସନ୍ନିବେଶିତ କରିଛନ୍ତି । କଥାଦୃଷ୍ଟିରୁ ବାଲ୍ମୀକି ରାମାୟଣ ଅପେକ୍ଷା ସଂସ୍କୃତ ମହାଭାରତର ସେ ଅତ୍ୟନ୍ତ ନିକଟବର୍ତ୍ତୀ ।

## (ଖ) ସତ୍ୟବ୍ରତ କଥା :

ଋଷ୍ୟଶୃଙ୍ଗ ଉପାଖ୍ୟାନ ପରି ସତ୍ୟବ୍ରତଙ୍କ କଥା କହିବାବେଳେ ସେ ବାଲ୍ମୀକି ରାମାୟଣକୁ ପରିତ୍ୟାଗ କରିଛନ୍ତି ଏବଂ ନିଜ ଗ୍ରନ୍ଥର ମୁଖ୍ୟ ସ୍ରୋତରୂପେ ହରିବଂଶକୁ ଗ୍ରହଣ କରିଛନ୍ତି । ସଂସ୍କୃତ ମହାଭାରତ ଓ ବିଷ୍ଣୁ ପୁରାଣର କଥାକୁ ମଧ୍ୟ କବି ଏଥିରେ ଗ୍ରହଣ କରିଥିବା ଅନୁମିତ ହୁଏ । ହରିବଂଶରେ ସତ୍ୟବ୍ରତ ତିନୋଟି ମହାପାପ ଯୋଗୁଁ ତ୍ରିଶଙ୍କୁରେ ପରିଣତ ହେଲେ । ସେ ତିନୋଟି ମହାପାପ ହେଉଛି-

(୧) ବ୍ରାହ୍ମଣ କନ୍ୟାହରଣ

(୨) ଗୋହତ୍ୟା

(୩) ଗୋମାଂସ ଭକ୍ଷଣ

'ଜଗମୋହନ ରାମାୟଣ'ରେ ମଧ୍ୟ ଏସବୁର ସୂଚନା ମିଳେ । ତେବେ ସତ୍ୟବ୍ରତଙ୍କଦ୍ୱାରା ବଳାତ୍କାରରେ ବ୍ରାହ୍ମଣକନ୍ୟା ହରଣ ପ୍ରସଙ୍ଗ କବିଙ୍କୁ ଭଲ ଲାଗିଲାନାହିଁ । ଉଭୟ ଉଭୟଙ୍କ ପ୍ରତି ଆକୃଷ୍ଟ ହେବାଦ୍ୱାରା ଏହି ବିବାହ ସଂପନ୍ନ ହୋଇଛି । କଥାରେ ଏତିକି ପରିବର୍ତ୍ତନ କରି କବି ସତ୍ୟବ୍ରତ ନାଁର ମର୍ଯ୍ୟାଦା ରକ୍ଷା କରିଛନ୍ତି । ବିବାହପରେ ସତ୍ୟବ୍ରତ ନିଜର ସତ୍ୟ ରକ୍ଷାକରିବାପାଇଁ ମାତା, ପିତା, ଗୁରୁଜନ ଓ ସମାଜକୁ ଅମାନ୍ୟ କରିଛନ୍ତି । ସତ୍ୟରକ୍ଷା ସତ୍ତ୍ୱେ ସାମାଜିକ ଅପରାଧରୁ ସେ ମୁକ୍ତ ହୋଇପାରିନାହାନ୍ତି ।

କ୍ଷତ୍ରିୟପକ୍ଷେ ବ୍ରାହ୍ମଣକନ୍ୟା ଗ୍ରହଣ କରିବା ସେତେବେଳେ ହୁଏତ ମହାପାପରୂପେ ଗୃହୀତ ହେଉଥିଲା । ସେଥିପାଇଁ ରାଜା ସତ୍ୟବ୍ରତଙ୍କୁ ରାଜ୍ୟରୁ ନିର୍ବାସିତ କରିଥିଲେ ।

ବିଶ୍ୱାମିତ୍ରଙ୍କ କୁଟୁମ୍ବକୁ ଶରଣଦେବା ପରେ ସତ୍ୟବ୍ରତଙ୍କ ଜୀବନର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହୁଏ । ଏହା ଫଳରେ ସେ ବ୍ରାହ୍ମଣ ବଶିଷ୍ଠଙ୍କ ବିରାଗଭାଜନ ହୋଇଥିଲେ । ଏକପକ୍ଷରେ ପରୋପକାର ସଦୃଶ ମହାବ୍ରତ ଓ ଅନ୍ୟ ପକ୍ଷରେ ବ୍ରାହ୍ମଣ ବଶିଷ୍ଠଙ୍କ କ୍ରୋଧ ତାଙ୍କ ଜୀବନକୁ ନିୟନ୍ତ୍ରଣ କଲା ।

ବିଶ୍ୱାମିତ୍ରଙ୍କ ପରିବାରର ଦାୟିତ୍ୱ ନେବା ପରେ ଦେଶରେ ଭୟଙ୍କର ଦୁର୍ଭିକ୍ଷ ଉପସ୍ଥିତ ହୁଏ । ବହୁ ଚେଷ୍ଟାସତ୍ତ୍ୱେ ସତ୍ୟବ୍ରତ ସେମାନଙ୍କ ପାଇଁ ଖାଦ୍ୟ ଯୋଗାଡ଼ କରିପାରିନଥିଲେ । ଶେଷକୁ ନିରୁପାୟ ହୋଇ ସେ ଗୋମାତାକୁ ବଧ କରିବା ପାଇଁ ବାଧ୍ୟ ହେଲେ । ସମାଜ ଦୃଷ୍ଟିରେ ଗୋହତ୍ୟା ଏକ ମହାପାପ ।

ଏହିପରି ଗୋଟିଏ ପରେ ଗୋଟିଏ ପାପ କରିଥିଲେହେଁ ବଳରାମଙ୍କ ଦୃଷ୍ଟିରେ ସତ୍ୟବ୍ରତ ଏସବୁ ପାପର ଊର୍ଦ୍ଧ୍ୱରେ ଅବସ୍ଥାପିତ । ହିନ୍ଦୁଧର୍ମ ଓ ସମାଜରେ ପ୍ରଚଳିତ ବିଧି ଅନୁଯାୟୀ ବ୍ରାହ୍ମଣକନ୍ୟା ବିବାହ, ଗୁରୁଜନ ଓ ବ୍ରାହ୍ମଣମାନଙ୍କର ବିରାଗଭାଜନ ହେବା ଓ ଗୋହତ୍ୟା ପ୍ରଭୃତି କର୍ମ ମହାପାପରେ ବିବେଚିତ ହେଉଥିବାବେଳେ ବଳରାମ ଏସବୁକୁ ଏବେ ଗୁରୁତ୍ୱ ଦେଇଥିବା ଜଣାଯାଏ ନାହିଁ । ସେ ଏସବୁ ଅପେକ୍ଷା ସତ୍ୟରକ୍ଷା ଓ ପରୋପକାରକୁ ବିଶେଷ ମହତ୍ତ୍ୱ ଦେଇଛନ୍ତି । ସେଥିପାଇଁ ସତ୍ୟବ୍ରତଙ୍କ ଚରିତ୍ରରେ ସତ୍ୟ ଓ ପରୋପକାର ରୂପୀ ମହାନ କର୍ମର ପରାକ୍ରମରେ ଏହିସବୁ ମହାପାପର ପ୍ରଭାବ ତାଙ୍କ ଜୀବନରୁ ବିଦୂରୀତ ହୋଇଯାଇଛି ।

## (ଗ) ଗାଲବ ଉପାଖାନ :

ସେହିପରି ଆଉ ଏକ ଦୃଷ୍ଟାନ୍ତ ହେଲା ଗାଲବ ଉପାଖ୍ୟାନ । ଏହି କଥାର ମଧ ହରିବଂଶରେ ପ୍ରଭାବ ଦେଖିବାକୁ ମିଳେ । ହରିବଂଶର ଗାଲବ ହେଲେ ବିଶ୍ୱାମିତ୍ରଙ୍କ ଶିଷ୍ୟ । ଶିକ୍ଷା ସମାପ୍ତ ପରେ ସେ ଗୁରୁଙ୍କୁ ଦକ୍ଷିଣା ଦାନ କଲେ । ଅଥଚ ଦକ୍ଷିଣାରୂପେ ପ୍ରଦତ୍ତ ଦ୍ରବ୍ୟରେ ସେ ନିଜେ ସନ୍ତୁଷ୍ଟ ହୋଇପାରିନଥିଲେ । ଗୁରୁଙ୍କୁ ସଂପୂର୍ଣ୍ଣଭାବେ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ସେ ଇଚ୍ଛାମତେ ଦ୍ରବ୍ୟ ମାଗିବା ପାଇଁ ବାରମ୍ବାର ଅନୁରୋଧ କରିଥିଲେ । ଏଥିରେ ବିଶ୍ୱାମିତ୍ର ବିରକ୍ତ ହୋଇ ଏକସହସ୍ର ଶ୍ୱେତ ବର୍ଣ୍ଣ ଓ ଶ୍ୟାମ ବର୍ଣ୍ଣର ଅଶ୍ୱ ଦାବୀ କଲେ । ଏପରି ଅଶ୍ୱ ଏତେ ସଂଖ୍ୟାରେ ମିଳିବା ସହଜ ନଥିଲା । ସେଥିପାଇଁ ଗାଲବ ଗୁରୁଙ୍କୁ ପ୍ରାର୍ଥନା କଲେ । କିନ୍ତୁ ଗୁରୁ ନିଜ ଦାବୀରେ ଅଟଳ ରହି ଗାଲବଙ୍କୁ ସାହାଯ୍ୟ କରିବା ପାଇଁ ଯଯାତି ରାଜାଙ୍କ ପାଖକୁ ନେଇଗଲେ । ଯଯାତି ଅଶ୍ୱ ପରିବର୍ତ୍ତେ ଗାଲବଙ୍କୁ ମାଧବୀ ନାମ୍ନୀ ଏକ ଚିରକୁମାରୀ କନ୍ୟା ପ୍ରଦାନ କଲେ । ଗାଲବ ଅଶ୍ୱ ପାଇବା ଉଦ୍ଦେଶ୍ୟରେ ସେହି କନ୍ୟାକୁ ପ୍ରଥମେ ଅଯୋଧ୍ୟାର ରାଜା ହର୍ଯାଶ୍ୱ, ଦ୍ୱିତୀୟରେ କାଶ୍ମୀର ରାଜା ଦିବୋଦାସ ଏବଂ ତୃତୀୟରେ ଭୋଜନଗର ରାଜାଙ୍କ ସହ ବିବାହ କରାଇ ପ୍ରତ୍ୟେକଙ୍କଠାରୁ ଦୁଇଶହ ଅଶ୍ୱ ଗ୍ରହଣ କଲେ । ଶେଷକୁ ନିରୁପାୟ ହୋଇ ଛଅଶହ ଅଶ୍ୱ

ସହ ମାଧବୀ କନ୍ୟାକୁ ନିଜ ଗୁରୁଙ୍କୁ ସମର୍ପଣ କରି ସେ ଋଣମୁକ୍ତ ହୋଇଥିଲେ । ତିନିଜଣ ରାଜା ଓ ବିଶ୍ୱାମିତ୍ରଙ୍କୁ ବିବାହ କରି ସନ୍ତାନ ଜାତ କରିଥିଲେହେଁ ମାଧବୀଙ୍କ କୁମାରୀତ୍ୱ ନଷ୍ଟ ହୋଇନଥିଲା । ନିଜ କାର୍ଯ୍ୟ ପୂର୍ଣ୍ଣ ହେବାପରେ ଗାଳବ ପୁଣି ମାଧବୀକନ୍ୟାକୁ ନେଇ ତାଙ୍କ ପିତାଙ୍କୁ ଫେରାଇ ଦେଇଥିଲେ । କଥାର ଅଲୌକିକତା ଅଂଶ ବଳରାମଙ୍କୁ ବୋଧହୁଏ ଭଲ ଲାଗିନଥିଲା । ସେଥିପାଇଁ ସେ ଅତି ଚତୁରତାର ସହ ଶ୍ୱେତବର୍ଣ୍ଣ ଓ ଶ୍ୟାମବର୍ଣ୍ଣର ଅଶ୍ୱ ପରିବର୍ତ୍ତେ କେବଳ ଶ୍ୱେତଅଶ୍ୱ କଥା ରଖିଥିଲେ । ଗୁରୁ ଶ୍ୱେତ ଅଶ୍ୱ ମାଗିବା ପରେ ଗାଳବ ନିଜର ଭୁଲ୍ ବୁଝିପାରିଥିଲେ । ତେଣୁ ସେ ଗୁରୁଙ୍କ ପାଦତଳେ ଶରଣପଶି କ୍ଷମାମାଗି ତାଙ୍କୁ ସନ୍ତୁଷ୍ଟ କଲେ । ସତ୍ୟବ୍ରତ ଉପାଖ୍ୟାନ ପରି ଏଥିରେ ମଧ୍ୟ ବୈଷ୍ଣବ ଧର୍ମର ମୂଳତତ୍ତ୍ୱ କ୍ଷମାକୁ ପ୍ରାଧାନ୍ୟ ଦିଆଯାଇଛି । ରାଜାମାନଙ୍କ ଅହଂକାର ଓ ସାର୍ବଭୌମତ୍ୱ ଉପରେ ଏହା ଥିଲା ଏକ ନୀରବ ଆକ୍ରମଣ । ବଳରାମ ହୁଏତ ଏକଥା କହିବାକୁ ଚାହିଁଥିଲେ ଯେ ରାଜା ଇଚ୍ଛାକଲେ ସବୁକିଛି କରିପାରିବା ସମ୍ଭବ ନୁହେଁ । ସେମାନଙ୍କ ଶକ୍ତିର ଏକ ସୀମା ଅଛି । ସେଥିପାଇଁ ଗାଳବ ବିଶ୍ୱାମିତ୍ରଙ୍କ ପାଦତଳେ ପଡ଼ି କହିଛନ୍ତି-

> ମୁହିଂ କିସ ରାଜା କେତେକ ମୋହର ମହୀ
> ଏ ଦୁର୍ଲ୍ଲଭ କଥା କି ପାରିବି ଭିଆଇ ।
> ଏତେ ବୋଲି ଗାଳବ ମୁନିର ପାଦେ ପଡ଼ି
> କାର୍ପୁଣ୍ୟ ହୋଇଣ ବେନିକର ଯୋଡ଼ି ।
> ଭୋ ମହାମୁନି ! ମୋତେ ପ୍ରତିକାର କର
> ଏ ମହା କଷ୍ଟଣୁ ବାରେକ ଉଦ୍ଧର ।
> ମୁହିଂ ଅଜ୍ଞାନ ଯେ ନଜାଣି ଗର୍ବ କଲି
> ତହିଂର ଫଳ ମୁନି ଏବେ ସେ ପାଇଲି ।

ଗାଳବ ରାଜାଙ୍କ ଅନୁଶୋଚନା ପରେ ବିଶ୍ୱାମିତ୍ର ପ୍ରସନ୍ନ ହୋଇ ଗାଳବଙ୍କୁ ସ୍ୱର୍ଗରେ ସ୍ଥାନ ଦେଇଥିଲେ ।

## (ଘ) ଅହଲ୍ୟା ଉପାଖ୍ୟାନ :

ବିଭିନ୍ନ ପୁରାଣରୁ ଉପାଦାନ ଆହରଣ କରି ଜଗମୋହନ ରାମାୟଣକୁ ପରିପୁଷ୍ଟ କରିବାର ଆଉ ଗୋଟିଏ ଦୃଷ୍ଟାନ୍ତ ଅହଲ୍ୟା ଉପାଖ୍ୟାନ । ଆଲୋଚନାର ସୁବିଧା ପାଇଁ ଏହାକୁ ଛ'ଟି ବିଭାଗରେ ବିଭକ୍ତ କରାଯାଇପାରେ ।

## ୧ । ଅହଲ୍ୟା ଜନ୍ମ :

ବଳରାମ ଅହଲ୍ୟା ଉପାଖ୍ୟାନକୁ ପୁରାଣରୁ ଆଣିଥିବା ନିଜେ ସ୍ୱୀକାର କରିଛନ୍ତି । ବିଶ୍ୱାମିତ୍ରଙ୍କ ମୁଖରେ ଏହା ପ୍ରକାଶିତ । "ପୁରାଣର କଥା ତୁ ଶୁଣ ହୋ ଶ୍ରୀରାମ" କଥାର ପ୍ରଥମ ପର୍ଯ୍ୟାୟ ଅର୍ଥାତ୍ ଅହଲ୍ୟା ଜନ୍ମବୃତ୍ତାନ୍ତରେ ବାଲ୍ମୀକି ତାଙ୍କର ଆଦର୍ଶ । ବାଲ୍ମୀକିଙ୍କ ଅନୁଯାୟୀ ବଳରାମ ତାଙ୍କ ରାମାୟଣରେ ଅହଲ୍ୟାକୁ ବ୍ରହ୍ମାଙ୍କର ମାନସ-ସନ୍ତାନରୂପେ ସୃଷ୍ଟି କଲେ । ବ୍ରହ୍ମା ଅନ୍ୟପ୍ରାଣୀମାନଙ୍କ ଅଙ୍ଗରୁ ସୌନ୍ଦର୍ଯ୍ୟ ଗ୍ରହଣକରି 'ହଲ' (ଅସୁନ୍ଦରତା) ନଥିବା ଏକ କନ୍ୟା ସୃଷ୍ଟିକରି ତା'ର ନାମ ଅହଲ୍ୟା ରଖିଥିଲେ । ବଳରାମଙ୍କ ବର୍ଣ୍ଣନାରେ ଅନ୍ୟପ୍ରାଣୀମାନଙ୍କ ସର୍ବଶ୍ରେଷ୍ଠ ଅଙ୍ଗ ଏବଂ ଏହାର ଅପରୂପ ସୌନ୍ଦର୍ଯ୍ୟର ସ୍ପଷ୍ଟ ଉଲ୍ଲେଖ ନଥିଲେହେଁ ପ୍ରକାରାନ୍ତରରେ ଏହାର ସୂଚନା ମିଳିଥାଏ । ବଳରାମଙ୍କ ଉକ୍ତି ହେଉଛି :

ପୂର୍ବେ ବିଧାତା ଯେ ମନରେ ବିଚାରି,
ସକଳ ରୂପ ଗୁଣ ଏକଠାବ କରି ।
ଲାବଣ୍ୟମୟ କରି କନ୍ୟା ଏକ କଲା,
ଅହଲ୍ୟା ରୂପ ତା'ର ଅହଲ୍ୟା ନାମ ଦେଲା ।

ଏହି ଉକ୍ତିରେ 'ସକଳ ରୂପଗୁଣ ଏକ ଠାବକରି' ପଦଟି ବାଲ୍ମୀକିଙ୍କ ଅନ୍ୟପ୍ରାଣୀଙ୍କ ସର୍ବଶ୍ରେଷ୍ଠ ଅଙ୍ଗର ହିଁ ଓଡ଼ିଆ ରୂପାନ୍ତର । ସେହିପରି 'ଅହଲ୍ୟା ରୂପ ତା'ର କହିବାବେଳେ କବିଙ୍କ ମନରେ 'ହଲ୍' ନଥିବା ଅର୍ଥାତ୍ 'ଅସୁନ୍ଦରତା' ନଥିବା ଅର୍ଥର ସୂଚନା ମିଳେ । ତେବେ ବାଲ୍ମୀକି ରାମାୟଣରେ ବ୍ରହ୍ମା ଏକ ଶିଶୁକନ୍ୟାକୁ ଜାତ କରିଥିବାବେଳେ ଜଗମୋହନ ରାମାୟଣରେ ଅହଲ୍ୟା ଯୁବତୀ ରୂପରେ ଜନ୍ମ ହୋଇଥିଲେ ।

## ୨ । ଅହଲ୍ୟା ବିବାହ :

ଜନ୍ମକଥାକୁ କବି ବାଲ୍ମୀକି ରାମାୟଣରୁ ଆରମ୍ଭ କରିଥିଲେହେଁ ଅହଲ୍ୟାଙ୍କ ବିବାହ ପ୍ରସଙ୍ଗ ବର୍ଣ୍ଣନା କଲାବେଳେ ସେ 'ବ୍ରହ୍ମପୁରାଣ'କୁ ଅନୁସରଣ କରିଥିଲେ । ବାଲ୍ମୀକି ରାମାୟଣ ଅନୁଯାୟୀ ଅହଲ୍ୟାକୁ ସୃଷ୍ଟିକଲାପରେ ବ୍ରହ୍ମା ତାଙ୍କୁ 'ଧରୋହର' ଭାବରେ ଗୌତମଙ୍କ ପାଖରେ ରଖିଥିଲେ । ବହୁବର୍ଷ ପରେ ଗୌତମ ସେହି କନ୍ୟାକୁ ଆଣି ବ୍ରହ୍ମାଙ୍କୁ ଫେରାଇଦେଲେ । ଗୌତମଙ୍କ ସିଦ୍ଧିରେ ଖୁସିହୋଇ ବ୍ରହ୍ମା ଅହଲ୍ୟାକୁ ପତ୍ନୀଭାବେ ଗ୍ରହଣ କରିବାପାଇଁ ତାଙ୍କୁ ଅନୁରୋଧ କଲେ । ବ୍ରହ୍ମପୁରାଣରେ ମଧ୍ୟ ବ୍ରହ୍ମା ଅହଲ୍ୟାକୁ ପ୍ରଥମେ

ଗୌତମଙ୍କ ନିକଟରେ ରଖିଥିଲେ । ଯୌବନ ପ୍ରାପ୍ତିପରେ ସବୁ ଦେବତା, ଦାନବ, ମୁନି, ଯକ୍ଷ ତଥା ରାକ୍ଷସ ଅହଲ୍ୟାକୁ ବିବାହକରିବାପାଇଁ ଆଗ୍ରହ ପ୍ରକାଶ କଲେ । ଏହା ଦେଖି ବ୍ରହ୍ମା ବିବାହର ଏକ ସର୍ତ୍ତ ସ୍ଥିରକଲେ । ସର୍ତ୍ତହେଲା- "ପୃଥିବୀକୁ ପର୍ଯ୍ୟଟନ କରି ପ୍ରଥମେ ଫେରିଆସିବା ବ୍ୟକ୍ତିହିଁ ଅହଲ୍ୟାକୁ ବିବାହ କରିପାରି ।" ବ୍ରହ୍ମାଙ୍କ ସର୍ତ୍ତରେ ରାଜିହୋଇ ସମସ୍ତେ ପୃଥିବୀ ପ୍ରଦକ୍ଷିଣ କରିବାକୁ ବାହାରିଗଲେ । ସେଠାରେ ଉପସ୍ଥିତ ଥିବା ଗୌତମ ଅର୍ଦ୍ଧପ୍ରସୂତୀ । ସୁରଭି ତଥା ନିକଟବର୍ତ୍ତୀ ଏକ ଶିବଲିଙ୍ଗକୁ ପ୍ରଦକ୍ଷିଣ କରି ବ୍ରହ୍ମାଙ୍କ ନିକଟକୁ ଫେରିଆସିଲେ ଓ ଅହଲ୍ୟାକୁ ବିବାହ କଲେ ।

ବଳରାମଙ୍କ ଅହଲ୍ୟାକଥା କେତେକ ପରିମାଣରେ ବ୍ରହ୍ମପୁରାଣରୁ ମଧ ଅଲଗା । ଏଥିରେ ଅହଲ୍ୟାଙ୍କ ଜନ୍ମ ଓ ବିବାହ ମଧରେ ଆଦୌ ପାର୍ଥକ୍ୟ ନାହିଁ । ବ୍ରହ୍ମାଙ୍କ ସୃଷ୍ଟି ଅହଲ୍ୟା ଜଣେ ଅପରୂପା ସୁନ୍ଦରୀ ଯୁବତୀ । ସେ ସୃଷ୍ଟିହେବାର ପରକ୍ଷଣରେହିଁ ସକଳ ସୁର, ମୁନି ତାଙ୍କ ପ୍ରତି ଆକୃଷ୍ଟ ହୋଇ ତାଙ୍କୁ ବିବାହ କରିବାପାଇଁ ଆଗ୍ରହ ପ୍ରକାଶ କରିଥିଲେ । ଏପରି ସମସ୍ୟାର ସମାଧାନ କରିବାପାଇଁ ବିଶ୍ୱସ୍ରଷ୍ଟା ବ୍ରହ୍ମା ବିଶ୍ୱ ପ୍ରଦକ୍ଷିଣ ସର୍ତ୍ତର ଘୋଷଣା କଲେ-

ଦେଖିଣ ମୋହଗଲେ ସକଳ ସୁର ମୁନି,
ଦେବତାକୁ ଚାହିଂ ବୋଲଇ ପଦ୍ମଯୋନି ।
ଯେ ଅବା ପୃଥିବୀ ପ୍ରଦକ୍ଷିଣ କରି ଆସଇ,
ତାହାର ଏ ନାରୀ ବୋଲି ପିତାମହ ଭାଷଇ ।

ବ୍ରହ୍ମାଙ୍କ ଆଦେଶକ୍ରମେ ସମସ୍ତେ ପୃଥିବୀ ପ୍ରଦକ୍ଷିଣ କରିବାପାଇଁ ଚାଲିଯିବାପରେ ବ୍ରହ୍ମାଙ୍କ ଦ୍ୱାରା ଆଦିଷ୍ଟ ହୋଇ ଗୌତମ ଏହି ପ୍ରତିଯୋଗିତାରେ ଯୋଗଦାନ କଲେ ଏବଂ ବ୍ରହ୍ମପୁରାଣର କଥା ପରି ଗୌତମ ସୁରଭିଙ୍କ ଚାରିପଟେ ତିନିବେଳ ବୁଲିଆସି ବ୍ରହ୍ମାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ବ୍ରହ୍ମା ଏକଥା ଦେଖି ଆନନ୍ଦିତ ହେଲେ ଏବଂ ଗୌତମଙ୍କ ହସ୍ତରେ ଅହଲ୍ୟାଙ୍କୁ ସମର୍ପଣ କଲେ । ସେତେବେଳେ ସେ କୁଳଗୋତ୍ର ସୁମରି ଉଭୟଙ୍କର ବିବାହକାର୍ଯ୍ୟ ସମାପନ କରିଥିଲେ । ବ୍ରହ୍ମପୁରାଣର ଅର୍ଦ୍ଧପ୍ରସୂତା ସୁରଭି ଓ ଶିବଲିଙ୍କ ସ୍ଥାନରେ କେବଳ ସୁରଭିର ଉଲ୍ଲେଖ ଏବଂ ଅନ୍ୟକେତେକ ଗୌଣ ପରିବର୍ତ୍ତନ ସତ୍ତ୍ୱେ ବଳରାମଙ୍କ ଉପରେ ବ୍ରହ୍ମପୁରାଣର ପ୍ରଭାବ ସହଜରେ ଦେଖାଯାଇପାରେ ।

## ୩। ଅହଲ୍ୟାହରଣ :

ଅହଲ୍ୟାହରଣର ମୂଳ ରୂପ ମଧ୍ୟ ବ୍ରହ୍ମପୁରାଣରୁ ଗୃହୀତ । ଗୌତମ ବେଶରେ ଇନ୍ଦ୍ରଙ୍କର ଅହଲ୍ୟାହରଣ ଓ ମାର୍ଜାର ବେଶରେ ପଳାୟନ କଥା ବ୍ରହ୍ମପୁରାଣର ଅନୁରୂପ । ପାର୍ଥକ୍ୟ ଭିତରେ ବ୍ରହ୍ମପୁରାଣ ଇନ୍ଦ୍ରଙ୍କର କେବଳ ଗୌତମ ବେଶକଥା କହିଥିବାବେଳେ ବଳରାମ ଇନ୍ଦ୍ରଙ୍କର ଦୁଇଟି ରୂପର ଉଲ୍ଲେଖ କରିଛନ୍ତି । ଇନ୍ଦ୍ରଙ୍କ ନିଜ ବେଶ ସ ଗୌତମ ବେଶ । ଇନ୍ଦ୍ରବେଶରେ ସେ ସଫଳକାମ ହେଲେ ନାହିଁ; ବରଂ ଅହଲ୍ୟାଙ୍କ ଦ୍ୱାରା ଭର୍ତ୍ସିତ ହୋଇ ଫେରିଗଲେ । ସେତେବେଳେ ଅହଲ୍ୟା କହିଥିଲେ-

କନ୍ୟା ବୋଇଲା ତୁ ସୁରପତି ହୋଇ
ଏତେ ଅବିଚାର କଥା କହୁ କାହିଂପାଇଂ ।
ମୁହିଂ ଋଷିଆଣୀ ତୁହି ଦେବରାଜ
କେମନ୍ତେ ସୁରପତି ନପାଇଲୁ ଲାଜ ।
ଯତିର ଭାରିଜା ମୁଁ ପତିବ୍ରତା ସତୀ
ମୋତେ ହରିବୁ ତୁ ଏହ୍ନେ ତୋର ମତି ।
ଯାଅ ସ୍ୱର୍ଗପୁର ନଥାଅ ତୁ ଏଥ
ଏଇକ୍ଷଣି ଆସିବେ ଯେ ମୋହର ପ୍ରାଣନାଥ ।
ଈଶ୍ୱର ଯୋଗେଣ କାମ ଧ୍ୱଂସ କଲା
ତୁହି ଆଜ ନାଶ ଯିବୁ ଆହିଲା ବୋଇଲା ।
ଅହିଲାର ନିରାଶେ ଯେ ଗଲା ସୁରପତି
ଅହିଲାର ରୂପ ଗୁଣ ବିଚାରଇ ମତି ।

ଏହାର କିଛିକ୍ଷଣ ପରେ ଇନ୍ଦ୍ର ଗୌତମଙ୍କ ଅନୁପସ୍ଥିତିରେ ସୁଯୋଗନେଇ ଗୌତମ ବେଶରେ ଆଶ୍ରମରେ ପ୍ରବେଶ କଲେ । ଏଥର ଅହଲ୍ୟା ଆଉ ଇନ୍ଦ୍ରଙ୍କୁ ଚିହ୍ନିପାରିନଥିଲେ । କିନ୍ତୁ ଗୌତମ ଏତେଶୀଘ୍ର ସ୍ନାନାଦିକର୍ମ ନସାରି ଫେରିଆସିବା ଘଟଣା ତାଙ୍କୁ ବିସ୍ମିତ କରିଥିଲା । ସେଥିପାଇଁ ସେ କହିଥିଲେ :

କନ୍ୟା ବୋଇଲା ଋଷି ସ୍ନାହାନ କରି ତ ଗଲ
କରମ ନସାରିଣ ଲେଉଟି ଅଇଲ ।
ମାୟାରୂପ ଧରି ବୋଲଇ ବଜ୍ରପାଣି

ଶୁଣ ଶଶିମୁଖୀ ଗୋ ଗୁପତ ରସବାଣୀ ।
ଜଳଘାଟେ ଦେଖିଲି ଅଛଇ ଉର୍ବଶୀ
ସ୍ନାହାନ କରଇ ସେ ପବିତ୍ର ଜଳେ ପଶି ।
ଜାନୁ ଯଉବନ ମର୍ମଥାନ ଦେଖି
ବାହୁଡ଼ି ଅଇଲି ମୁଁ କାମଭରେ ଦୁଃଖୀ ।
ଦେସି ଆଲିଙ୍ଗନ କରାଅ ସୁରତି
ଏ ମୋ'ର ଅଧୀର ପଞ୍ଚୁ ଯେ ପ୍ରକୃତି ।

ଛଦ୍ମବେଶୀ ଇନ୍ଦ୍ରଙ୍କଠାରୁ ଏପରି ନିବେଦନ ଶୁଣି ସେ ତାଙ୍କୁ ଅଙ୍ଗଦାନ ଦେଲେ । ଇନ୍ଦ୍ରଙ୍କର ଦୁଇ ବେଶରେ ଦୁଇଥର ଆସିବା ବ୍ରହ୍ମବୈବର୍ତ୍ତ ପୁରାଣ ତଥା ଗୌତମ ବେଶରେ ଇନ୍ଦ୍ରଙ୍କ ଅହଲ୍ୟାହରଣ କଥା ବାଲ୍ମୀକି ରାମାୟଣରେ ଥିଲେ ବି ସେଥିରେ ଅହଲ୍ୟା ସଂପୂର୍ଣ୍ଣ ନିର୍ଦ୍ଦୋଷ ନଥିଲେ । ସେ ଗୌତମ ରୂପଧାରୀ ଇନ୍ଦ୍ରଙ୍କୁ ଚିହ୍ନିକରି ମଧ୍ୟ ନିଜ ରୂପର ଅହଂକାରରେ ତାଙ୍କୁ ଅଙ୍ଗଦାନ କରିଥିଲେ । ପରବର୍ତ୍ତୀ ଯୁଗରେ ବିଶେଷକରି ମହାଭାରତଠାରୁ ଅହଲ୍ୟାଙ୍କୁ ଦୋଷଶୂନ୍ୟ କରିବା ପାଇଁ ପ୍ରଚେଷ୍ଟା କରାଗଲା । ବଳରାମ ମଧ୍ୟ ବାଲ୍ମୀକିଙ୍କୁ ଅନୁସରଣ ନକରି ପରବର୍ତ୍ତୀ କଥାକୁହିଁ ଗ୍ରହଣ କଲେ । ବଳରାମଙ୍କ ଅହଲ୍ୟା ନିଜର ନିର୍ଦ୍ଦୋଷତା ଦର୍ଶାଇ ନିବେଦନ କରିଛି :

ଶୁଣିଣ ସୁନ୍ଦରୀ ଯୋଡ଼ଇ ବେନିକର
ମୁନି ଦୋଷ ଯେ ନାହିଁନା ମୋହର ।
ମାୟା ହୋଇ ଅଇଲା ତୁମ ରୂପଧରି
ମୁହିଂକେହ୍ନେ ଜାଣିବି ସେ ଅଟଇ ବଜ୍ରଧାରୀ ।
ପୂର୍ବେ କାହାର ମୁଁ ଛିନାଇଥିଲି ଆଶ
ତେଣୁ ସେ ଘରବରେ ହୋଇଲି ନିରାଶ ।

ଅହଲ୍ୟାଙ୍କର ଏ ପ୍ରକାର ସଫେଇ ସତ୍ତ୍ୱେ 'ଦୋଷ ନଥିଲେ ଦଣ୍ଡ ମିଳେ ନାହିଁ'- ବିଷୟରେ ବଳରାମ ସଚେତନ ଥିବାପରି ଜଣାଯାଏ । ସେଥିପାଇଁ ଇନ୍ଦ୍ରଙ୍କ ପ୍ରଥମ ଆଗମନ ଓ ପ୍ରେମ ନିବେଦନ ସଂପର୍କରେ ଅହଲ୍ୟା ଗୌତମଙ୍କୁ କୌଣସି ସୂଚନା ଦେଇନଥିଲେ । ପୁଣି ଯେତେବେଳେ ସେ ମାୟା ଚରିତକଥା ସ୍ପଷ୍ଟଭାବେ ଜାଣିପାରିଥିଲେ, ସେତେବେଳେ ମଧ୍ୟ ସତକଥା ନକହି ସେ ଋଷିଙ୍କୁ ଭୁଲାଇବାକୁ ଚେଷ୍ଟାକଲେ । ଗୌତମ ଯେତେବେଳେ

ପଚାରିଲେ- 'ଢଳାର ବାଟେ କେ ହୋଇଲା ବାହାର ?' ସେତେବେଳେ ଅହଲ୍ୟା ଉତ୍ତରଦେଲେ :

"ଅହିଲା ବୋଇଲା ସେ ଅଟଇ ମାର୍ଜାର ।"

ଇନ୍ଦ୍ରଙ୍କ ମାର୍ଜାର ରୂପକଥା ବ୍ରହ୍ମପୁରାଣ ବ୍ୟତୀତ କଥାସରିତ ସାଗର (୩,୭), ପଦ୍ମପୁରାଣ **ସୃଷ୍ଟିଖଣ୍ଡ** (୫୧/୫୭), କମ୍ୱନ ରାମାୟଣ ୯୧/୯/୭୬) ଏବଂ ପଞ୍ଜାବ ଲୋକକଥାର ଦେଖିବାକୁ ମିଳେ । ଏ ସବୁର ମାର୍ଜାର ଶବ୍ଦ ଏହାର ପ୍ରକୃତ ଅର୍ଥ ବ୍ୟତୀତ ମା' ଜାର 'ମୋର ଜାର' ଅର୍ଥରେ ବ୍ୟବହୃତ । ବଳରାମଙ୍କ ମାର୍ଜାର ଶବ୍ଦ ପ୍ରୟୋଗରେ କୌଣସି ଶ୍ଳେଷ ଅର୍ଥର ସୂଚନା ମିଳେ ନାହିଁ । ଏଥିରୁ ଅନୁମାନ କରାଯାଇପାରେ, ସେ କୌଣସି ନିର୍ଦ୍ଦିଷ୍ଟ ଗ୍ରନ୍ଥରୁ ଏହାକୁ ଗ୍ରହଣ କରିନଥିଲେ । ତେବେ ବ୍ରହ୍ମପୁରାଣରୁ ଅନ୍ୟ ପ୍ରସଙ୍ଗ ଗ୍ରହଣ କରିଥିବା ହେତୁ ଏବଂ ସେଥିରେ ବେଳେବେଳେ ପରିବର୍ତ୍ତନ କରିଥିବାରୁ ସେ ଏହାର ଶ୍ଳେଷ ଅର୍ଥକୁ ଲୋପକରି ପ୍ରକୃତ ଅର୍ଥକୁହିଁ ଗ୍ରହଣ କରିଥିଲେ । ହୁଏତ ଲୋକରେ ପ୍ରଚଳିତ ଇନ୍ଦ୍ରଙ୍କ ମାର୍ଜାର ରୂପ କଥାକୁ ଶୁଣି ସେ ନିଜ ଗ୍ରନ୍ଥରେ ନୂତନତା ଆଣିବା ପାଇଁ ଏହାର ଉଲ୍ଲେଖ କରିଥିଲେ ।

## ୪ । ଇନ୍ଦ୍ର ଓ ଅହଲ୍ୟାଙ୍କ ଉପରେ ଅଭିଶାପ :

ଅହଲ୍ୟାଙ୍କର ଦୋଷଥିବା ଦେଖି ଗୌତମ ମୁନି ଇନ୍ଦ୍ର ଓ ଅହଲ୍ୟା ଉଭୟଙ୍କୁ ଅଭିଶାପ ଦେଲେ । ଇନ୍ଦ୍ର ହେଲେ ନପୁଂସକ ଓ ସହସ୍ରଭଗ ଏବଂ ଅହଲ୍ୟା ହେଲେ ପଥର ।

ଇନ୍ଦ୍ର ନପୁଂସକ ହେବାକଥା ବାଲ୍ମୀକିଙ୍କ ବାଳକାଣ୍ଡର ବୃତ୍ତାନ୍ତ ଉପରେ ଆଧାରିତ । ଗୌତମଙ୍କ ଅଭିଶାପ ଫଳରେ ଇନ୍ଦ୍ରଙ୍କ ବୃଷଣ ଛିଡ଼ିପଡ଼ିଥିଲା (ସର୍ଗ-୪୮) ଓ ପରେ ଦେବତାମାନେ ତାଙ୍କୁ ମେଷର ବୃଷଣ ପ୍ରଦାନ କରିଥିଲେ । ଇନ୍ଦ୍ରଙ୍କର ସହସ୍ର ଭଗହେବା ବ୍ରହ୍ମପୁରାଣ (୮୭/୫୯), ସ୍କନ୍ଦପୁରାଣ, (ନାଗରଖଣ୍ଡ-ଅ-୨୦୭), କଥା ସରିତ୍ ସାଗର (୩/୧୭), ପଦ୍ମପୁରାଣ (୫/୫୧/୨) ଓ ଆଧ୍ୟାତ୍ମ ରାମାୟଣ (୧/୫/୨୬) ପ୍ରଭୃତିରେ ମିଳୁଥିଲେହେଁ ବାଲ୍ମୀକିରେ ନଥିଲା । ସହସ୍ର ଭଗରୁ ବ୍ରହ୍ମାଙ୍କ ଅନୁରୋଧକ୍ରମେ ଗୌତମଙ୍କ ଦ୍ୱାରା ଇନ୍ଦ୍ର ସହସ୍ର ନୟନରେ ପରିଣତ ହେବା ପ୍ରସଙ୍ଗ ବଳରାମଙ୍କ ବ୍ୟତୀତ କେବଳ କମ୍ୱନ ରାମାୟଣରେ ଦେଖିବାକୁ ମିଳେ । ଇନ୍ଦ୍ର ସହସ୍ର ଭଗହେବା ଯୋଗୁଁ ଲଜ୍ଜାବଶତଃ

ମାନସରୋବରରେ ଯାଇ ଲୁଚି ରହିଗଲେ । ଏହାର ଅନୁରୂପ ପ୍ରସଙ୍ଗ ଆସାମୀ ରାମାୟଣରେ ମିଳୁଥିଲେହେଁ ଅନ୍ୟତ୍ର ଦେଖିବାକୁ ମିଳେନାହିଁ ।

**୫ । ଅହଲ୍ୟାଙ୍କ ପାଷାଣ ରୂପ :**

ବାଲ୍ମୀକୀୟ ରାମାୟଣ ବାଲକାଣ୍ଡ (ସର୍ଗ-୪୮)ରେ ଗୌତମ ଅହଲ୍ୟାଙ୍କୁ ଯେଉଁ ଅଭିଶାପ ଦେଲେ, ସେଥିରୁ ସେ ଅଦୃଶ୍ୟ ହୋଇ ତପସ୍ୟା କରିବା କଥା ବର୍ଣ୍ଣିତ । ଉକ୍ତ ତାମିଲ ବୁଲ୍‌କେଙ୍କ ମତରେ, ବାଲ୍ମୀକି ରାମାୟଣର 'ସ୍ୱଂ ବପୁ ଧାରୟିସ୍ୟସି' (୪୮/୩୨) ବାକ୍ୟାଂଶରୁ ଶାପଗ୍ରସ୍ତା ଅହଲ୍ୟା ପାଷାଣ ହୋଇଯାଇଥିବା ଧାରଣା ସୃଷ୍ଟିହୋଇ ପ୍ରଥମେ ରଘୁବଂଶରେ (୧୧/୩୪) ଏହାର ଉଲ୍ଲେଖ ମିଳିଥିଲା । ଏହାପରେ ନୃସିଂହପୁରାଣ (ଅଧ୍ୟାୟ ୪୭), ସ୍କନ୍ଦପୁରାଣ (ରେବାଖଣ୍ଡ-୧୩୬), ନାଗର ଖଣ୍ଡ-୨୦୮), ଜାନକୀ ହରଣ (୬/୧୪), କଥାସରିତ୍ ସାଗର (୩/୧୭), ମହାନାଟକ (୩/୧୭), ବହ୍ନିପୁରାଣ (ପୃ-୧୮୬), ଉଦାର ରାଘବ (୩/୨୯), ଶନୈଶ୍ଚର କୃତ ରାମଶତକ (୧୮), ପ୍ରଭୃତିରେ ଏହାର ଉଲ୍ଲେଖ ଦେଖିବାକୁ ମିଳିଲା । ଆଧୁନିକ ରାମାୟଣ ମଧ୍ୟରୁ କମ୍ବନ୍ ରାମାୟଣ (୧/୯), ରଙ୍ଗନାଥ ରାମାୟଣ (୧/୨୯), ସାରଳା ମହାଭାରତ (ମଧ୍ୟପର୍ବ-ପୃ ୨୨୩), କୃତ୍ତିବାସ ରାମାୟଣ (୧/୫୯), ରାମଚରିତ ମାନସ (୧/୨୧୦), ଆସାମୀୟ ବାଲକାଣ୍ଡ, ସୁରସାଗର (ନବମ ସ୍କନ୍ଧ-୪୬୬), ଭାବାର୍ଥ ରାମାୟଣ (୧/୧୪) ପ୍ରଭୃତିରେ ଅହଲ୍ୟା ପାଷାଣରେ ପରିଣତ ହୋଇଥିବାର ଉଲ୍ଲେଖ ମିଳିଥାଏ । ଏଥିରୁ ଜଣାଯାଏ ଯେ ଅହଲ୍ୟାଙ୍କ ପାଷାଣ ହେବା ପ୍ରସଙ୍ଗ ଭାରତୀୟ ରାମାୟଣ ପରଂପରାର ସର୍ବାଧିକ ପ୍ରଚଳିତ ରୂପ ଏବଂ ବଳରାମ ଏହି ଲୋକପ୍ରିୟ କଥାକୁହିଁ ନିଜ ରାମାୟଣରେ ଗ୍ରହଣ କରି ଏହାର ଲୋକପ୍ରିୟତାକୁ ସ୍ୱୀକାର କରିଛନ୍ତି ।

**୬ । ଅହଲ୍ୟା ଉଦ୍ଧାର :**

ରାମଙ୍କ ଚରଣ ସ୍ପର୍ଶରେ ଅଭିଶପ୍ତ ପଥର ପୁଣି ଅହଲ୍ୟାରେ ପରିଣତ ହେବା ଓ ରାମଙ୍କୁ ସ୍ତୁତିକରି ଅହଲ୍ୟା ନିଜ ସ୍ୱାମୀଙ୍କ ପାଖକୁ ଫେରିଯିବା ପ୍ରସଙ୍ଗ ମଧ୍ୟ ବାଲ୍ମୀକିରେ ନାହିଁ । ଅହଲ୍ୟାଙ୍କ ରାମଭକ୍ତି ପ୍ରଦର୍ଶନ କରିବାପାଇଁ ବଳରାମ ଏକଥାକୁ ଆଧ୍ୟାତ୍ମ ରାମାୟଣରୁ ଆଣିଥିବା ପରି ମନେହୁଏ ।

## (ଡ) ସୀତା ବିବାହ :

କବିଙ୍କ ବହୁଶାସ୍ତ୍ରଦର୍ଶିତାର ଅନ୍ୟ ଗୋଟିଏ ଉଦାହରଣ ହେଉଛି ସୀତା ବିବାହ । ବାଲ୍ମୀକି ରାମାୟଣର କଥା ସହ ଅନ୍ୟପୁରାଣର କଥା ଏଥିରେ ସଂଯୋଜିତ । ଏଥିରେ ଥିବା ଅବାଲ୍ମୀକୀୟ କଥା ସବୁକୁ ବିଶ୍ଳେଷଣ କଲେ ଏହାହିଁ ପ୍ରତିପାଦିତ ହୁଏ ।

### ୧ । ସୀତା ସ୍ୱୟମ୍ବର :

ଧନୁଭଗ୍ନ ପୂର୍ବରୁ ଆୟୋଜିତ ହୋଇଥିବା ସୀତା ସ୍ୱୟମ୍ବରରେ ଯୋଗଦାନ କରିଥିବା ବିଭିନ୍ନ ଅସୁର ରାଜା ବିଶେଷକରି ରାବଣ ଓ ବାଣାସୁର ଏବଂ ବିଭିନ୍ନ ଦେବତା ବିଶେଷକରି ଇନ୍ଦ୍ର, ପବନ ଓ ଗଣେଶଙ୍କ କଥାକୁ ଗ୍ରହଣ କରାଯାଇପାରେ । ବାଲ୍ମୀକିଙ୍କ ରାମାୟଣରେ ଏସବୁ ଅସୁର ରାଜା ଓ ଦେବତାଙ୍କର ଉଲ୍ଲେଖ ନଥିଲେହେଁ ଶ୍ରୀରାମଙ୍କ ଶକ୍ତି, ପରାକ୍ରମ ଓ ମହିମାକୁ ପ୍ରକାଶ କରିବାପାଇଁ ପରବର୍ତ୍ତୀ କବିମାନେ ଏହାର ସଂଯୋଜନା କଲେ । ଏହି କଥାର ପ୍ରଥମ ସଂଯୋଜନାକର୍ତ୍ତା ହେଲେ 'ପ୍ରସନ୍ନ ରାଘବ' ରଚୟିତା ଜୟଦେବ । ପଦ୍ମପୁରାଣର ପାତାଳଖଣ୍ଡ (ଅଧ୍ୟାୟ-୧୧୨)ରେ ମଧ୍ୟ ଏମାନଙ୍କର ଉଲ୍ଲେଖ ଦେଖିବାକୁ ମିଳେ । ବଳରାମ ଦାସ ରାବଣ ଓ ବାଣାସୁର ଅସଫଳ ପ୍ରଚେଷ୍ଟା ବର୍ଣ୍ଣନା କଲାବେଳେ କେବଳ ଯେ ପ୍ରସନ୍ନ ରାଘବ ବା ପଦ୍ମପୁରାଣର ଅନୁସରଣ କରିଛନ୍ତି, ତା ନୁହେଁ । କଥାରେ ହାସ୍ୟରସ ସୃଷ୍ଟି କରିବାପାଇଁ ମଧ୍ୟ ଏ କଥାର ପ୍ରୟୋଗ କରିଛନ୍ତି । କବି ବାଣାସୁରର ଦୁର୍ଦ୍ଦଶା ବର୍ଣ୍ଣନା କରି ଲେଖିଛନ୍ତି:-

ସହସ୍ରେକ ଭୁଜ ବାଣାସୁର ରାଜା,<br>
ଟେକି ନପାରିଣ ପାଇଲା ତ ଲଜ୍ଜା ।<br>
ଅଜ୍ଞାନ ହୋଇଣ ବସିଲା ନୃପବର,<br>
ରୁଧିରବାହାର ହୋଇଲା ମୁଖର ।

ରାବଣର ଦୁର୍ଦ୍ଦଶା ବାଣାସୁରକୁ ବଳିଯାଇଛି :

ଏତେ ବୋଲି ଧନୁ ଛୁଇଁଲାକ ଯହୁଁ,<br>
ଅଜ୍ଞାନ ହୋଇଣ ସେ ପଡ଼ିଲାକ ତହୁଁ ।<br>
ଦଶବଦନରୁ ବାହାର ରୁଧିର,<br>
କ୍ଷଣକେ ଚେତନା ପାଇଲା ମହାବୀର ।

ଲାଜେଣ ନକହି ଗଲା ଦଶମାଥ,
ଉପହାସ କଲେ ନୃପତି ସମସ୍ତ ।
ଦେଖିଣ ବାଣାସୁର ଉପହାସ କଲା,
ଦେବଧନୁ ବୋଲି ସେ ବାହୁଡ଼ିଣ ଗଲା ।

ରାବଣ ଓ ବାଣାସୁରଙ୍କ ପରି ଇନ୍ଦ୍ର, ପବନ, ଓ ଗଣେଶ ପ୍ରମୁଖ ଦେବତା ଆସି ନିଜ ପରାକ୍ରମର ଯେଉଁ ନିଷ୍ଫଳ ପରୀକ୍ଷା କରିଥିଲେ, ତାହାର ମୂଳସ୍ରୋତ ମଧ୍ୟ ସେହି ପଦ୍ମପୁରାଣର ପାତାଳଖଣ୍ଡ (ଅଧ୍ୟାୟ ୧୧୨/୯୯-୧୦୩) । ଏଥିରେ କିନ୍ତୁ ଆସିଥିଲେ ମହେନ୍ଦ୍ର, ସୂର୍ଯ୍ୟ ଓ ବାୟୁ । ବଳରାମଙ୍କ ରାମାୟଣରେ ପବନ ନିଜେ ଧନୁ ଉଠାଇ ନାହାନ୍ତି । ଇନ୍ଦ୍ରଙ୍କ ଦୁର୍ଦ୍ଦଶାର ସେ ଥିଲେ କେବଳ ଜଣେ ସାକ୍ଷୀ । ଏହି ପ୍ରସଙ୍ଗରେ ବ୍ରହ୍ମାଙ୍କ ପରିହାସ ମଧ୍ୟ ଅତ୍ୟନ୍ତ ଉପଭୋଗ୍ୟ । କବି ଲେଖିଛନ୍ତି-

ପବନ କର ଧରି ସେ ବାହୁଡ଼ିଲା ଧାତି,
ଦେଖିଣ ତାହା କଇ ପଚାରିଲେ ବେଦପତି ।
ତୁହି ଅଙ୍ଗାରକି ମାଡିଲୁ ବଜ୍ରପାଣି,
ବିଶ୍ୱନାଥ ଧନୁ କି ଛୁଇଁଲୁ ନଜାଣି ।

ସେହିପରି ଗଣେଶଙ୍କ ଶୋଚନୀୟ ଅବସ୍ଥା ବର୍ଣ୍ଣନା କରି କବି ହାସ୍ୟରସର ସୃଷ୍ଟି କରିଛନ୍ତି :

ଥୋର ହସ୍ତେ ଧରି ତୋଳିଣ ମନକଲା,
ହୁଙ୍କାର ଧ୍ୱନି କରି ରାଗେଣ ଉଛୁଡ଼ିଲା ।
ପେଟେ ପଶିଲା ତାର କର ଚରଣ ବୁକୁ,
ଲୋକେ ଉପହାସ୍ୟ କରନ୍ତି ତାହାକୁ ।

ପଦ୍ମପୁରାଣରୁ ମୂଳସୂତ୍ର ଗ୍ରହଣ କରିବାପରେ ବଳରାମ ସେଥିରେ ଯୋଗକଲେ ସହସ୍ରାର୍ଜ୍ଜୁନଙ୍କ ପରି ପ୍ରତାପୀ ରାଜା, ନର ନାରାୟଣଙ୍କ ସଦୃଶ ମହିମାବନ୍ତ ଋଷି ଓ କାର୍ତ୍ତିକେଶ୍ୱରଙ୍କ ପରି ପରାକ୍ରମୀ ଯୋଦ୍ଧାଙ୍କ କଥା । ଏହା ବ୍ୟତୀତ କାମଦେବ, ମୁଚୁକୁନ୍ଦ, ଲବଣ ଅସୁର, ପର୍ଶୁରାମଙ୍କ ପରି ଶକ୍ତିଶାଳୀ ବ୍ୟକ୍ତି ମଧ୍ୟ ଆସି ଧନୁକୁ ଦେଖିବାକ୍ଷଣି ଜ୍ଞାନ ହାରିଥିଲେ ବା ହତବୀର୍ଯ୍ୟ ହୋଇ ଫେରିଯାଇଥିଲେ । ନରଋଷିଙ୍କ ଦୁର୍ଦ୍ଦଶା ବର୍ଣ୍ଣନା କରି ବଳରାମ ଲେଖିଛନ୍ତି :-

ଅବିଙ୍କ ପଣେ ଯହୁଁ ଛୁଇଂଲେ ଶରାସନ,
ମୁଖରୁ ରୁଧିର ତାର ବହଇ ତତକ୍ଷଣ ।
ନୟନର କୋଣେ ସେ ଦିଶିଲା ରକତ
ନାସିକାର ଦ୍ୱାରେ ଯେ ଗଳଇ ଶୋଣିତ ।
ଶ୍ରବଣ ବିମ୍ବରୁ ଯେ ଝରଇ ଅବିଚ୍ଛିନ୍ନ
ଚକ୍ରପ୍ରାୟେ ହୋଇ ସେ ବୁଲଇ ନୟନ ।
ଝାଙ୍ଗମାରି ମୁନି ପଡ଼ିଲା ଭୂମି ତଳେ
ଦେଖି ଉପହାସ୍ୟ କରନ୍ତି ସକଳେ ।

ନର ଋଷି କେବଳ ଯେ 'ସଂସାର ତ୍ରୈଲୋକ୍ୟେ' ଲଜ୍ଜାପାଇ ଫେରିଗଲେ ତା' ନୁହେଁ; ସେହି ଦୋଷରୁ ସେ ମୃତ୍ୟୁପୁରରେ ଜନ୍ମ ହେବାର ଅଭିଶାପ ମଧ୍ୟ ପାଇଥିଲେ । ବଳରାମଙ୍କ ସଦୃଶ କାମ୍ୱୋଡ଼ିଆର ରାମାୟଣ ରାମକୀର୍ତ୍ତିରେ ବ୍ରହ୍ମା, ଇନ୍ଦ୍ର, ଶିବ, ବାୟୁ ଓ ଅଗ୍ନି ପ୍ରଭୃତି ତେତ୍ରିଶ କୋଟି ଦେବତା ଧନୁ ତୋଳିବାକୁ ଜଣକ ପରେ ଜଣେ ଆସି ଅସମର୍ଥ ହୋଇ ଫେରିଯାଇଥିଲେ ।

୨ । ସୀତାଙ୍କ ପୂର୍ବାନୁରାଗ :

ସୀତାଙ୍କ ପୂର୍ବାନୁରାଗ ଜଗମୋହନ ରାମାୟଣର ଅନ୍ୟ ଏକ ନୂତନ ସଂଯୋଜନା । ରାଜସଭାରେ ରାମଙ୍କୁ ଦେଖି ପ୍ରେମବିହ୍ୱଳା ସୀତାଙ୍କର ବ୍ରହ୍ମାଙ୍କୁ ପ୍ରାର୍ଥନା କରିବା ଏବଂ ବରଣମାଳା ପ୍ରଦାନ କଲାବେଳେ ଚାରିଚକ୍ଷୁର ମିଳନ ହେବା ଏହାର ଦୁଇଟି ଦୃଶ୍ୟ । ବରଣମାଳା ପ୍ରଦାନ ଓ ଚାରିଚକ୍ଷୁ ମିଳନ କଥା କବି ଯଥାକ୍ରମେ ଅଧ୍ୟାତ୍ମ ରାମାୟଣ ଓ ଆନନ୍ଦ ରାମାୟଣରୁ ଗ୍ରହଣ କରିଛନ୍ତି । ଅନ୍ୟ ପ୍ରସଙ୍ଗଟି ଆସିଛି ମହାନାଟକ କିମ୍ବା ଆନନ୍ଦ ରାମାୟଣ (୧/୩/୧୧୧-୧୨୦)ରୁ । ରାମଙ୍କ ପ୍ରଥମ ଦର୍ଶନ କାଳରେ ସୀତା ସଖୀ ସମାବୃତା ହୋଇ ଜଗତୀ ଉପରେ ଉପବେଶନ କରିଛନ୍ତି । ଏହି ଦୃଶ୍ୟରୁ ବଳରାମଙ୍କ ନିଜସ୍ୱ ଭଙ୍ଗୀଟିକୁ ଦେଖିବା ପାଇଁ ତୁଳନାରେ କୃତ୍ତିବାସ ରାମାୟଣକୁ ରଖାଯାଇପାରେ :

ଏଇକାଳେ ସୀତାଦେବୀ ସହ ସଖୀଗଣ,
ଅଟ୍ଟାଳିକା ପରେ ଉଠି କରେ ନିରୀକ୍ଷଣ ।

ବଳରାମ ଅଟ୍ଟାଳିକା ସ୍ଥାନରେ ରଖିଛନ୍ତି କନକମଣ୍ଡପ । ସେହି ମଣ୍ଡପର ଚାଳ

ରତ୍ନରେ ନିର୍ମିତ । ଏହାର ଚତୁର୍ଦ୍ଦିଗରେ ମୁକ୍ତା ନିର୍ମିତ ମାଳ ମାଳ ତୋରଣ ବିରାଜିତ । ଏହା ଗଜମୋତିର ଝରା ଓ ବିବିଧ ବର୍ଣ୍ଣର କୁସୁମରେ ଶୋଭାପାଉଥିଲା । ଏହିପରି ଏକ ଆଡ଼ମ୍ବରପୂର୍ଣ୍ଣ ରାଜକୀୟ ପରିବେଶ ମଧ୍ୟରେ ସୀତାଦେବୀ ସଖୀ-ସମାବୃତ ହୋଇ ଉପବେଶନ କରିଥିଲେ:

ମଧ୍ୟରେ ପଲ୍ୟଙ୍କ ଯେ ଗଜଦନ୍ତଖୁରା
ସୁବର୍ଣ୍ଣର ପିତୁଳୀ ନିର୍ବାଣର ଝଡ଼ା ।
ତଥିର ଉପରେ ଦେବାଙ୍ଗ ପାଟତୁଳୀ
ନାଗେଶ୍ୱର କେଶର ଗୁଣ୍ଡର ମୁଚୁଳି ।
ଶେଯ ସଜାଇଲା ପତଳୀ ପାଛୋଡ଼ି
କର୍ପୂରର ଧୂଳି ଉପରେ ଛିଞ୍ଚାଡ଼ି ।
ତହିଁ ବିଜୟେ କରିଅଛନ୍ତି ଦେବୀସୀତା
ଲଲାଟେ ସିନ୍ଦୁର କପାଳେ ଗନ୍ଧଚିତା ।

କେବଳ ସେତିକି ନୁହେଁ, ସୀତାଙ୍କ ହାତରେ ଅଛି ଏକ ନାଗେଶ୍ୱର ଫୁଲ । ପରିବାରୀମାନେ ଆଲଟ ଓ ଚାମର ସେବା କରୁଛନ୍ତି ଏବଂ ଆଗରେ ଉଭାହୋଇ ବିଭିନ୍ନ କଥା କହିବାରେ ଲାଗିଛନ୍ତି ।

ବାଲ୍ମୀକି ଓ ଅନ୍ୟାନ୍ୟ ପ୍ରଚଳିତ ରାମାୟଣରେ ଏହି ଦୃଶ୍ୟଟି ନଥିବାରୁ ମନେହୁଏ, ଏହାଥିଲା ଷୋଡ଼ଶ ଶତାବ୍ଦୀ ଓଡ଼ିଶାର ରାଜକୀୟ ଚଳଣି । କୋଣାର୍କ ମନ୍ଦିରରେ ବିବାହର ଦୃଶ୍ୟ ଅଛି । ପଲ୍ୟଙ୍କ ଉପରେ ଆସୀନା ରାଜରମଣୀର ଦୃଶ୍ୟ ବି ରହିଛି । ପରିବାରୀଙ୍କ ସେବାକଥା ମଧ୍ୟ ଅଛି ।

ହିନ୍ଦୁପୁରାଣ ସବୁରେ ଲକ୍ଷ୍ମୀଙ୍କ ହାତରେ ପଦ୍ମଫୁଲ ଶୋଭା ପାଇଥାଏ । ଅଗ୍ନିପୁରାଣରେ ସରସ୍ୱତୀ ପଦ୍ମପୁଷ୍ପ ଧାରଣ କରିଥିବା ବର୍ଣ୍ଣିତ । ସୀତା କମଳିନୀଙ୍କ ଅବତାର । ତେଣୁ ତାଙ୍କ ହାତରେ ପଦ୍ମଫୁଲ କେବଳ ଶୋଭାପାଇଥାନ୍ତା; ତା' ହୋଇନାହିଁ । ପଦ୍ମଫୁଲ ସ୍ଥାନରେ ଅଛି ନାଗେଶ୍ୱର ଫୁଲ । ବୋଧହୁଏ ନାଗରଶ୍ରେଷ୍ଠ ଶ୍ରୀରାମଙ୍କ ସମ୍ବର୍ଦ୍ଧନା ପାଇଁ ଏହା ଏକ ପ୍ରତୀକ । ସେଥିପାଇଁ ନାଗରୀ ସୀତା ନାଗେଶ୍ୱର ଫୁଲ ଧରି ନାଗରଶ୍ରେଷ୍ଠ ଶ୍ରୀରାମଙ୍କୁ ଅପେକ୍ଷା କରିଛନ୍ତି । ଏହି କଥା ଉଲ୍ଲେଖ କଲାବେଳେ ଆଉ ଏକ ଚିତ୍ର ମନରେ ଉଦୟ ହୋଇଥାଏ । ମୁସଲମାନ ରମଣୀମାନଙ୍କ ମଧ୍ୟରୁ ଯେଉଁମାନଙ୍କ ଚିତ୍ର ଦେଖିବାକୁ ମିଳେ, ସେମାନେ ସାଧାରଣତଃ ହାତରେ ଫୁଲଟିଏ ଧାରଣ କରିଥାନ୍ତି । ଯେପରିକି ରେଜିଆ, ମମତାଜ ଓ ନୁରଜାହାନ । ବଳରାମ ତାଙ୍କ ରାମାୟଣ ଲେଖିଲାବେଳକୁ ଓଡ଼ିଶାକୁ

ମୁସଲମାନ ରାଜତ୍ୱ ଆସିନଥିଲା । ମୁସଲମାନ ସୁଲତାନମାନେ ବାରମ୍ବାର ଓଡ଼ିଶା ଆକ୍ରମଣ କରି ଫେରିଯାଇଥିଲେ । ଇତିହାସରୁ ଏତିକି ସୂଚନା ମିଳୁଥିଲେହେଁ ସେତେବେଳକୁ ମୁସଲମାନମାନଙ୍କ ସହ ଓଡ଼ିଶାର ସଂପର୍କ ବହୁଭାବରେ ବୃଦ୍ଧି ପାଇଥିବା ବିଭିନ୍ନ ସୂତ୍ରରୁ ଜାଣିହୁଏ । ମୁସଲମାନ କବିମାନେ ଓଡ଼ିଶା ବିଷୟରେ ବିଶେଷକରି ପୁରୀର ମହାପ୍ରସାଦ ସେବା ବିଷୟରେ ସଚେତନ ଥିଲେ । ମହମ୍ମଦ ଜାୟସୀକୃତ 'ପଦ୍ମାବତ୍' କାବ୍ୟରେ ଜଗନ୍ନାଥ କ୍ଷେତ୍ରରେ ନିମ୍ନୋକ୍ତ ଚିତ୍ର ମିଳିଥାଏ :

ଜଗରନାଥ ଜୌଁ ଦେଖେନ୍ ହି ଆଇ
ଭୋଜନ ରିନ୍ଧା ହାଟ ବିକାଇ

ଜଗନ୍ନାଥ କ୍ଷେତ୍ରର ଏହି ବୈଶିଷ୍ଟ୍ୟ ମୁସଲମାନମାନଙ୍କୁ ଆଶ୍ଚର୍ଯ୍ୟ ଚକିତ କଲାପରି ହିନ୍ଦୁ କବିମାନେ ଶୁଣାଶୁଣିରୁ ମୁସଲମାନ ଜାତିର ବହୁ ବୈଶିଷ୍ଟକୁ ସେମାନଙ୍କ କାବ୍ୟ କବିତାରେ ସ୍ଥାନ ଦେଇଥିବା ଅନୁମାନ କରିହୁଏ । ହିନ୍ଦୁ ରାଜାମାନଙ୍କ ମଧ୍ୟରେ ମୋଗଲ କୁଚରାୟଙ୍କର ଗଣନା, ରାଣୀଙ୍କର ଯାନବାହାନରେ ଗିଲିମିର ପ୍ରୟୋଗ, ଯୁଦ୍ଧକ୍ଷେତ୍ରରେ ତର୍କଶ ଓ କମାଣର ବ୍ୟବହାର ଏବଂ ଖାଦ୍ୟ ମଧ୍ୟରେ ପଇଡିର ଗଣନାକୁ ଏହାର ଉଦାହରଣ ରୂପେ ଗ୍ରହଣ କରାଯାଇପାରେ । ଏହି ଆଦାନ ପ୍ରଦାନର ଫଳ ସ୍ୱରୂପ ସୀତାଙ୍କ ଚରିତ୍ରରେ ମଧ୍ୟ ବହୁ ପରିବର୍ତ୍ତନ ଦେଖାଦେଇଥିଲା । ସ୍ୱାମୀଙ୍କ ସାଙ୍ଗରେ ବନକୁ ଯିବାକଥା ତ ବାଲ୍ମୀକିରେ ଥିଲା; କିନ୍ତୁ ସେଥିରେ ଥିବା ସୀତାଙ୍କ ତଟସ୍ଥ ଭାବ ବଳରାମଙ୍କୁ ଭଲ ଲାଗିନଥିଲା । ସେଥିପାଇଁ ବଳରାମଙ୍କ ସୀତା ବନର ଶୋଭା ଦର୍ଶନରେ କେବଳ ଜଣେ ନୀରବ ଦ୍ରଷ୍ଟା ନହୋଇ ରାମଙ୍କ ସହ ବିଳାସକ୍ରୀଡ଼ାରେ ସକ୍ରିୟ ଅଂଶ ଗ୍ରହଣ କଲେ । ଏଥିରେ ତାଙ୍କର ବଧୂତ୍ୱ ଅପେକ୍ଷା ନାଗରୀତ୍ୱ ବିଶେଷ ଭାବେ ଆତ୍ମପ୍ରକାଶ କଲା । ଘନଜଙ୍ଗଲ ପରିବେଷ୍ଟିତ ଚିତ୍ରକୂଟରେ ରାମ ଓ ସୀତା ହାତ ମିଳାଇ ସ୍ୱଚ୍ଛନ୍ଦରେ ବିଚରଣ କଲେ ।

ବନପଥରେ ପର୍ବତ ଉପରେ, ପୁଣି ଗୋଦାବରୀର ସ୍ନାନ-ସୁଖ ଉଭୟଙ୍କୁ ବିମୋହିତ କଲା । ନାଗେଶ୍ୱର ଫୁଲର ଡାଳଦ୍ୱାରା ରାମ ଓ ସୀତା ପରସ୍ପରକୁ ପ୍ରେମପୂର୍ବକ ପ୍ରହାର କରି ଆନନ୍ଦ ପାଇଲେ । ନିର୍ଜନ ବନ ମଧ୍ୟରେ ରାମ ଓ ସୀତାଙ୍କର ଏହି ବିଳାସ ବାଲ୍ମୀକିଙ୍କ ବର୍ଣ୍ଣନାକୁ ଆଉ ଅନୁସରଣ କରୁନଥିଲା । ବାଲ୍ମୀକିରେ ଶ୍ରୀରାମ ସୀତାଙ୍କ ସମ୍ମୁଖରେ ଚିତ୍ରକୂଟ ଓ ଗୋଦାବରୀର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଥିଲେ । ସେହି ଅପରୂପ ସୌନ୍ଦର୍ଯ୍ୟକୁ ଦୂରରୁ ଦର୍ଶନ କରାଇ ସୀତାଙ୍କୁ ତୃପ୍ତ କରିବାର ଅଭିପ୍ରାୟ ବଳରାମଙ୍କ ବର୍ଣ୍ଣନାରେ ଆଉ ନାହିଁ ।

ଚିତ୍ରକୂଟର ଭୀଷଣତାକୁ ଦୂରେଇଦେଇ ନଗରୀର ସୁସଜ୍ଜିତ ଉଦ୍ୟାନରେ କ୍ରୀଡ଼ା କଲାଭଳି ରାମ ଓ ସୀତା ଦୁର୍ଗମ ଅରଣ୍ୟରେ ନିଜର ଉଦ୍ଦାମ ଯୌବନକୁ ସାର୍ଥକ କରିବାପାଇଁ ଇଚ୍ଛା କରିଥିଲେ । ବଳରାମ ଏହି ପରିକଳ୍ପନାକୁ ଆହୁରି ମୂର୍ତ୍ତିମନ୍ତ କରି ପ୍ରକାଶ କଲେ ରାଜ୍ୟାଭିଷେକ ପରେ ଅଯୋଧ୍ୟା ନିକଟବର୍ତ୍ତୀ ରାଜୋଦ୍ୟାନ ଓ ସେଥିରେ ଥିବା ବିଳାସ ଭବନରେ ରାମ ଓ ସୀତାଙ୍କ ଆମୋଦ ପ୍ରମୋଦର ବର୍ଣ୍ଣନା କରି । ସଂସ୍କୃତ ସାହିତ୍ୟରେ ଉପବନର ବର୍ଣ୍ଣନା, ରାଜା ଓ ରାଣୀଙ୍କର ବିନୋଦ, ପ୍ରଚୁର ପରିମାଣରେ ଦେଖିବାକୁ ମିଳୁଥିଲେହେଁ ମୋଗଲଙ୍କ ବିଳାସଉଦ୍ୟାନର ପରିକଳ୍ପନା ବଳରାମ ଦାସଙ୍କୁ ତାଙ୍କ ରାମାୟଣରେ ଏହିସବୁ ଅଂଶ ଯୋଗ କରିବାପାଇଁ ନୂଆ ଉତ୍ସାହ ଓ ଉଦ୍ଦୀପନା ଦେଇଥିବା ମନେହୁଏ । ହିନ୍ଦୀକବି କେଶବ ଦାସଙ୍କ ପ୍ରମୋଦ ବନ ସେଥିରେ ଥିବା କୃତ୍ରିମ ପର୍ବତ, ସରିତ ଓ ଜଳାଶୟର ବର୍ଣ୍ଣନା ଦେଖି ହିନ୍ଦୀ ସାହିତ୍ୟର ଆଲୋଚକମାନେ ମଧ୍ୟ ମୋଗଲ ଉଦ୍ୟାନକୁ ସ୍ମରଣ କରିଛନ୍ତି । ଏପରି କରିବା ସ୍ୱାଭାବିକ ମନେହୁଏ । ସଂସ୍କୃତ ସାହିତ୍ୟ ବିଶେଷକରି ହନୁମାନ ନାଟକ ଓ ପ୍ରସନ୍ନ ରାଘବ ପ୍ରଭୃତିରୁ ରାମ ଓ ସୀତାଙ୍କ ବିଳାସପୂର୍ଣ୍ଣ ଜୀବନର ସଜୀବ ଚିତ୍ର ମିଳୁଥିଲେହେଁ ଏବଂ ବଳରାମ ଓ କେଶବ ଦାସ ପ୍ରମୁଖ କବି ଏସବୁ ଗ୍ରନ୍ଥ ଦ୍ୱାରା ବିଶେଷଭାବେ ପ୍ରଭାବିତ ହୋଇଥିବାର ସୂଚନା ଗ୍ରନ୍ଥ ମଧ୍ୟରେ ଯତ୍ର ତତ୍ର ମିଳୁଥିଲେହେଁ, ମୋଗଲ ଦରବାରର ଚଳଣି ମାଧ୍ୟମରେ ଦେଶରେ ନୂଆକରି ପ୍ରବେଶ କରିଥିବା ସଭ୍ୟତା ସେମାନଙ୍କୁ ଯେ ଆକୃଷ୍ଟ କରିନଥିବ, ଏକଥା ମଧ୍ୟ କହିହୁଏ ନାହିଁ । ସୀତାଙ୍କ ପୂର୍ବାନୁରାଗ ପ୍ରସଙ୍ଗରେ ବିଭିନ୍ନ ସଂସ୍କୃତ ନାଟକର ପ୍ରଭାବ ସହିତ ଏହି ନୂତନ ସଂସ୍କୃତିର ସ୍ପର୍ଶ ମଧ୍ୟ ଦେଖାଯାଇପାରେ ।

### ଧନୁଭଗ୍ନ :

ଏହି ପ୍ରସଙ୍ଗରେ କବି ବଳରାମ ବାଲ୍ମୀକି ରାମାୟଣକୁ ବିଶେଷଭାବେ ଅନୁସରଣ କରିଥିଲେହେଁ ଏଥିରେ ମଧ୍ୟ ଆବଶ୍ୟକତା ଅନୁଯାୟୀ ଅନ୍ୟଗ୍ରନ୍ଥରୁ କେତେକ ପ୍ରସଙ୍ଗର ସଂଯୋଜନା କରାଯାଇଛି । ବାଲ୍ମୀକି ରାମାୟଣରେ ବର୍ଣ୍ଣିତ ବିଷୟବସ୍ତୁକୁ ଆଲୋଚନା ଦୃଷ୍ଟିରୁ ନିମ୍ନଭାବେ ବିଭକ୍ତ କରାଯାଇପାରେ :

(୧) ବିଶ୍ୱାମିତ୍ରଙ୍କର ଶ୍ରୀରାମଙ୍କୁ ଧନୁ ଦେଖାଇବା ପାଇଁ ଜନକଙ୍କୁ ଅନୁରୋଧ ।

(୨) ଜନକଙ୍କ ଆଜ୍ଞାରେ ପାଞ୍ଚହଜାର ବ୍ୟକ୍ତି ଆଠଚକ୍ରଯୁକ୍ତ ମଞ୍ଜୁଷାକୁ ପଛରୁ ଠେଲି ଠେଲି ସଭାସ୍ଥଳକୁ ଆଣିବା ।

(୩) ଜନକଙ୍କ ଧନୁ ମହିମାକଥନ, ଜନକଙ୍କ ପୂର୍ବଜ ତଥା ଧନୁଭଙ୍ଗରେ ଅସଫଳ ନରପତିଙ୍କ ଏହାକୁ ସମ୍ମାନ ପ୍ରଦର୍ଶନ, ସମସ୍ତ ଦେବତା ଅସୁର, ରାକ୍ଷସ, ଗନ୍ଧର୍ବ, ଯକ୍ଷ, କିନ୍ନର ଓ ମହାନାଗ ପ୍ରଭୃତିର ଧନୁଭଙ୍ଗରେ ଅକ୍ଷମତା ।

(୪) ରାଜକୁମାରଙ୍କୁ ଅନୁରୋଧ କରିବାପାଇଁ ଜନକଙ୍କର ବିଶ୍ୱାମିତ୍ରଙ୍କୁ ନିବେଦନ ।

(୫) ବିଶ୍ୱାମିତ୍ରଙ୍କ ଅନୁରୋଧକ୍ରମେ ଶ୍ରୀରାମଙ୍କ ଧନୁଭଙ୍ଗ ।

(୬) ଧନୁଭଙ୍ଗର ଭୀଷଣ ଶବ୍ଦ ଶୁଣି ଜନକ, ବିଶ୍ୱାମିତ୍ର, ରାମ ଓ ଲକ୍ଷ୍ମଣ ବ୍ୟତୀତ ସଭାସ୍ଥିତ ରାଜାମାନଙ୍କର ମୂର୍ଚ୍ଛିତ ଅବସ୍ଥା ।

(୭) ଜନକଙ୍କ ଆନନ୍ଦପ୍ରକାଶ ଓ ଅଯୋଧ୍ୟାକୁ ମନ୍ତ୍ରୀ ପ୍ରେରଣର ପ୍ରସ୍ତାବ ।

ଜଗମୋହନ ରାମାୟଣରେ ଥିବା ଧନୁଭଙ୍ଗ ପ୍ରସଙ୍ଗକୁ ନିମ୍ନ ଭାବରେ ବିଭାଗୀକରଣ କରାଯାଇପାରେ :

(୧) ଜନକଙ୍କୁ ବିଶ୍ୱାମିତ୍ରଙ୍କର ଧନୁ ଦେଖାଇବା ଅନୁରୋଧ ।

(୨) ଜନକଙ୍କର ଶ୍ରୀରାମଙ୍କ ପରାକ୍ରମରେ ଅବିଶ୍ୱାସ ଓ ଧନୁ ମହିମା ବର୍ଣ୍ଣନା ।

(ଏହା ବିଷ୍ଣୁ ତେଜରୁ ଜାତ । କେବଳ ଶିବ ଏ ଧନୁ ଧାରଣରେ ସମର୍ଥ । ଏ ଧନୁଦ୍ୱାରା ସେ ଦକ୍ଷଯଜ୍ଞରେ ଦେବତାମାନଙ୍କୁ ଖଣ୍ଡବିଖଣ୍ଡ କରିଥିଲେ । ଜନକଙ୍କ ପୂର୍ବଜ ଦ୍ୱାରା ଏହାର ପୂଜା ଇତ୍ୟାଦି)

(୩) ଧନୁର ମହିମା ଅନେକ। ସେ ଧନ, ସଂପଦ, ସୁଖଶାନ୍ତି, ଗତିମୁକ୍ତି ଦାନକରେ ।

(୪) ସୀତାଙ୍କ ସଦୃଶ ବରପାଇଁ ଜନକଙ୍କର ଧନୁ ସମ୍ମୁଖରେ ପ୍ରାର୍ଥନା ।

(୫) ବାଣାସୁର, ରାବଣ ଓ ଇନ୍ଦ୍ରଙ୍କର ଧନୁ ସମ୍ମୁଖରେ ପ୍ରାର୍ଥନା ।

(୬) ବିଶ୍ୱାମିତ୍ରଙ୍କର ଜନକଙ୍କୁ ଦ୍ୱିତୀୟଥର ଅନୁରୋଧ ।

(୭) ନଗର ମଣ୍ଡନ

(୮) ଧନୁଭଙ୍ଗ ଦେଖିବା ପାଇଁ ରାଜା, ଋଷି, ବ୍ରାହ୍ମଣ ନଗରର ନରନାରୀ, ଅପସରୀ, ବ୍ରହ୍ମା ସମେତ ଦେବାଧିଦେବଗଣ, ଗନ୍ଧର୍ବ, କିନ୍ନରୀ ଓ ବିଦ୍ୟାଧରଙ୍କର ଆଗମନ ।

(୯) କନକ-ମଣ୍ଡପ ଉପରେ ଗଜଦନ୍ତ ଖୁରାଯୁକ୍ତ ସୁବର୍ଣ୍ଣପଲଙ୍କ । ତା ଉପରେ ସୀତାଙ୍କର ଉପସ୍ଥିତି, ସୀତାଙ୍କର ରୂପ ତଥା ଐଶ୍ୱର୍ଯ୍ୟର ବିସ୍ତୃତ ବର୍ଣ୍ଣନା ।

(୧୦) ବିଶ୍ୱାମିତ୍ରଙ୍କ ସହ ରାମ ଓ ଲକ୍ଷ୍ମଣଙ୍କର ସଭାମଣ୍ଡପରେ ପ୍ରବେଶ ।

(୧୧) ଜନକଙ୍କ ପ୍ରବେଶ ଓ ସତ୍ୟ ଘୋଷଣା, ସୀତାଜନ୍ମ ପ୍ରସଙ୍ଗ ବର୍ଣ୍ଣନା ।

(୧୨) ଜନକଙ୍କର ପ୍ରଥମଥର ପାଇଁ ଧନୁଯାଗ କଥା ବର୍ଣ୍ଣନ, ପରଶୁରାମଙ୍କର ଧନୁପୂଜା ପ୍ରସଙ୍ଗ ।

(୧୩) ଧନୁ ଆଣିବା ପାଇଁ ସତ୍ୟାନନ୍ଦଙ୍କୁ ଅନୁରୋଧ, ମହାଲକ୍ଷଣଯୁକ୍ତ ପୁରୁଷମାନଙ୍କ ଦ୍ୱାରା ଧନୁର ଆନୟନ । ଗଣିକାମାନଙ୍କର ବିଞ୍ଚଣା ଓ ଚାମର ସେବା, କୁସୁମ ବୃଷ୍ଟି ଓ ହୁଳହୁଳି ଧ୍ୱନି ଭିତରେ ଧନୁର ସଭାମଣ୍ଡପରେ ପ୍ରବେଶ ।

(୧୪) ଧନୁ ଦେଖି ସୀତାଙ୍କର ସଖୀମାନଙ୍କ ଆଗରେ ମନବ୍ୟଥା ପ୍ରକାଶ ଓ ସଖୀମାନଙ୍କର ସୀତାଙ୍କୁ ସାନ୍ତ୍ୱନାଦେବା ଛଳରେ ସମୁଦ୍ର ମନ୍ଥନ କଥା, ଇନ୍ଦ୍ରଙ୍କ ଦ୍ୱାରା ପବନର ଅଣଚାଶ ଖଣ୍ଡହେବା, ଚନ୍ଦ୍ର ବିବାହ ପ୍ରସଙ୍ଗ, ଶିବ ବିବାହ ପ୍ରଭୃତି ଘଟଣାର ବର୍ଣ୍ଣନା ।

(୧୫) ସଖୀ ମନମାୟାର ଭବିଷ୍ୟବାଣୀ ଓ ଅଦ୍‌ଭୁତ ଯୁକ୍ତିର ଅବତାରଣା ।

(୧୬) ମାଳବ ରାଜା ସୋମକେଶୀର ଧନୁ ଦର୍ଶନରେ ଭୟଭୀତ ଅବସ୍ଥା ।

(୧୭) ଜନକଙ୍କର ନିରାଶା ଓ ବିଶ୍ୱାମିତ୍ରଙ୍କର ସାନ୍ତ୍ୱନା ଦାନ ।

(୧୮) ବିଶ୍ୱାମିତ୍ରଙ୍କର ଶ୍ରୀରାମଙ୍କୁ ଅନୁରୋଧ ।

(୧୯) ଶ୍ରୀରାମ ନୃସିଂହ ସ୍ମରଣ କରି ବିଶ୍ୱାମିତ୍ରଙ୍କ ପାଦହୁଇଁ ସଲଜ୍ଜିତ ଭାବ ପ୍ରକାଶ କରି ଲକ୍ଷ୍ମଣ ସହ ଧନୁ ନିକଟକୁ ଗମନ ।

ସଭାସ୍ଥିତ ରାଜାଙ୍କର ପ୍ରଥମେ ଅବିଶ୍ୱାସ, ପରେ ଅଗସ୍ତି, ପ୍ରହ୍ଲାଦ, ବାମନ, ଧ୍ରୁବ, ଭଗୀରଥ ବୃତ୍ତାନ୍ତ ସ୍ମରଣ କରି ରାମଙ୍କ ବୀରତ୍ୱରେ ବିଶ୍ୱାସ ସ୍ଥାପନ ।

(୨୧) ରାମଙ୍କ ରୂପ ବର୍ଣ୍ଣନା, ରାଜାମାନଙ୍କର ବିଭିନ୍ନ ପ୍ରକାର ଚିନ୍ତା ।

(୨୨) ଶ୍ରୀରାମଙ୍କୁ ଦେଖି ସୀତାଙ୍କର ଆକର୍ଷଣ ।

(୨୩) ସୀତାଙ୍କର ବିଘ୍ନରାଜ ଓ ବିଧାତା ସ୍ତୁତି ।

(୨୪) ସୀତାଙ୍କ ଅଙ୍ଗରେ ବିଭିନ୍ନ ଶୁଭଶକୁନର ପ୍ରକାଶ ।

(୨୫) ମଞ୍ଜୁଷା ମଧ୍ୟରୁ ଧନୁ ବାହାର କରିବା ପାଇଁ ଜନକଙ୍କ ଅନୁମତି ପ୍ରତିକ୍ଷା ।

(୨୬) ଜନକ ଓ ବିଶ୍ୱାମିତ୍ରଙ୍କର ଆଲୋଚନା, ଜନକଙ୍କର ଭୀତତ୍ରସ୍ତ ଅବସ୍ଥାର ବର୍ଣ୍ଣନା ।

(୨୭) ରାଜାମାନଙ୍କର ଅନୁମତି ପାଇ ଜନକଙ୍କର ସମ୍ମତି ପ୍ରଦାନ ।

(୨୮) ମଞ୍ଜୁଷା ମଧ୍ୟରୁ ଧନୁ ବାହାର କରି ଶ୍ରୀରାମଙ୍କ ଧନୁ ଧାରଣ ।

(୨୯) ଧଇଲାରେ ଧନୁଗୋଳ ।

(୩୦) ହେଠମାଥ ହୋଇ ଧନୁ ନ ଧରିବାକୁ ଲକ୍ଷ୍ମଣଙ୍କର ରାମଙ୍କୁ ପରାମର୍ଶ ।

(୩୧) ଲକ୍ଷ୍ମଣଙ୍କର ପୃଥିବୀ ଓ ଦିଗପାଳମାନଙ୍କଚ ସାବଧାନ ହୋଇ ରହିବା ପାଇଁ ସତର୍କବାଣୀ ।

(୩୨) ପୃଥିବୀର ପ୍ରାର୍ଥନା ଶୁଣି ଶ୍ରୀରାମଙ୍କର ଧନୁଦଣ୍ଡକୁ ବୃଦ୍ଧାଙ୍ଗୁଷ୍ଠିର ନଖ ଉପରେ ସ୍ଥାପନ ।

(୩୩) ଧନୁ ଆମଞ୍ଚନ କାଳରେ ଜନକଙ୍କର ଭ୍ରାନ୍ତି ଦୂର ଏବଂ ଶ୍ରୀରାମଙ୍କୁ ବାସୁଦେବ ରୂପେ ଗ୍ରହଣ ।

(୩୪) ଧନୁର ଶ୍ରୀରାମଙ୍କୁ ଅନୁରୋଧ ଏବଂ ଶ୍ରୀରାମଙ୍କ ଧନୁକୁ ଉତ୍ତର ।

(୩୫) ଧନୁ ଆମଞ୍ଚନ ଦେଖି ସୀତତାଙ୍କର ରାମଗତପ୍ରାଣ ।

(୩୬) ଧନୁଭଙ୍ଗ ଶବ୍ଦରେ ପୃଥିବୀର କମ୍ପନ, ଉଲ୍‌କାପାତ, ଆଦିତ୍ୟର ଭୟ, ସପତସାଗର ଲହରୀର ସ୍ଥିରଭାବ ଧାରଣ, ସମୀରର ଧୀର ପ୍ରବାହ, ପରଶୁରାମର ଗର୍ବ ଖଣ୍ଡନ, କପିଳାସ କନ୍ଦରରେ ଗଉରୀଙ୍କର ମାନଭଞ୍ଜନ ପ୍ରଭୃତି ଘଟଣାର ସବିଶେଷ ବର୍ଣ୍ଣନା ।

(୩୭) ସତ୍ୟପୂର୍ଣ୍ଣ ହେବା ଦେଖି ବିଶ୍ୱାମିତ୍ରଙ୍କର ପରବର୍ତ୍ତୀ କାର୍ଯ୍ୟପାଇଁ ଜନକଙ୍କୁ ଅନୁରୋଧ ।

(୩୮) ଜନକଙ୍କ ନଗ୍ରରେ ଉତ୍ସବ କରାଇବା ପାଇଁ ସତ୍ୟାନନ୍ଦଙ୍କଚ ଆଦେଶ ପ୍ରଦାନ ।

(୩୯) ଜନକଙ୍କର ସୀତାଙ୍କୁ ସଭାସ୍ଥଳକୁ ଆନୟନ ।

(୪୦) ସୀତାଙ୍କର ନବରତ୍ନମାଳା ପ୍ରଦାନ ।

(୪୧) ଚାରିଚକ୍ଷୁ ଭେଟ ।

(୪୨) ରାବଣର ଆଗମନ, ରାବଣ ଓ ବ୍ରହ୍ମାଙ୍କର କଥୋପକଥନ ।

(୪୩) ଶ୍ରୀରାମଙ୍କ ବିବାହ ସଂପନ୍ନ ପାଇଁ ବିଶ୍ୱାମିତ୍ରଙ୍କର ଜନକଙ୍କୁ ଅନୁରୋଧ ।

(୪୪) ଜନକଙ୍କର ଶ୍ରୀରାମଙ୍କୁ ବିବାହ ପାଇଁ ଅନୁରୋଧ ।

(୪୫) ଦଶରଥଙ୍କ ଅନୁପସ୍ଥିତିରେ ବିବାହ ପାଇଁ ଶ୍ରୀରାମଙ୍କର ଅସମ୍ମତି ।

(୪୬) ଶ୍ରୀରାମଙ୍କ ଲେଖା ସହ ସତ୍ୟାନନ୍ଦଙ୍କର ଅଯୋଧ୍ୟାଯାତ୍ରା ।

ଧନୁଭଙ୍ଗ ପ୍ରସଙ୍ଗ ବର୍ଣ୍ଣନା କଲାବେଳେ ବଳରାମ କେବଳ ସେ ନୂତନ ପ୍ରସଙ୍ଗ ସନ୍ନିବେଶ କରିଛନ୍ତି ତାହା ନୁହେଁ, ପ୍ରତ୍ୟେକ ବର୍ଣ୍ଣନାକୁ ନୂତନତାର ରଙ୍ଗରେ ରଞ୍ଜିତ କରିଛନ୍ତି । ବାଲ୍ମୀକି ରାମାୟଣରେ ସୀତାଙ୍କର ଭୂମିକା ନାହିଁ । ଧନୁଭଙ୍ଗ ଦୃଶ୍ୟ ସେ ଦେଖୁନାହାନ୍ତି । ଅଥଚ ଜଗମୋହନ ରାମାୟଣରେ ତାଙ୍କ ପାଇଁ ସ୍ୱତନ୍ତ୍ର ମଣ୍ଡପ, ମଣ୍ଡପ ଉପରେ ସୁନାର ପଲଙ୍କ, ସଖୀମାନେ ଚାମର ଢାଳୁଛନ୍ତି । ତାହା ଉପରୁ ଧନୁଭଙ୍ଗ ଦୃଶ୍ୟ ଦେଖି ସେ ଆନନ୍ଦିତ ହେଉଛନ୍ତି । ସଖୀମାନଙ୍କ ସହ ଆଲୋଚନା କରୁଛନ୍ତି । ବାପାଙ୍କୁ ଦେଖି ସଖୀମାନଙ୍କ ପଛରେ ଲୁଚି ଯାଉଛନ୍ତି । ବରଣମାଳା ଦେଲାବେଳେ ଚାରିଚକ୍ଷୁର ମିଳନ ହେଉଛି । ବରଣମାଳା ଦେଇ ଅନ୍ତଃପୁରକୁ ଗଲାବେଳେ ମାତାମାନଙ୍କର କଲ୍ୟାଣ ଶୁଣି ସେ ତଳକୁ ମୁହଁପୋତି ହସୁଛନ୍ତି । ଶାଶୁମାନେ ଜଳାକବାଟି ଭିତରଦେଇ ରାମଙ୍କୁ ଦେଖି ଧନ୍ୟ ଧନ୍ୟ କରୁଛନ୍ତି । ଏହିପରି କେତେ ପରିଚିତ ଦୃଶ୍ୟଦେଇ ଧନୁଭଗ୍ନ ବୃତ୍ତାନ୍ତର ବର୍ଣ୍ଣନା । ବାଲ୍ମୀକିଙ୍କର ଧନୁଭଗ୍ନ କଥା କେବଳ କଥାରେ ହିଁ ରହିଛି । ଅଥଚ ବର୍ଣ୍ଣନାରେ ବଳରାମ ଦାସ ସଂପୂର୍ଣ୍ଣ ସ୍ୱତନ୍ତ୍ର । ଉଦାହରଣକୁ ଆହୁରି ସୀମିତ କରିଦେଲେ ବାଲ୍ମୀକି ଓ ବଳରାମଙ୍କ ମଧ୍ୟରେ ଥିବା ପାର୍ଥକ୍ୟ ଆହୁରି ସ୍ପଷ୍ଟ ହୋଇଯିବ । ଧନୁଭଗ୍ନର କଥା ଦେଖାଯାଉ ।

ବାଲ୍ମୀକିଙ୍କ ଅନୁଯାୟୀ ଶ୍ରୀରାମ ବିଶ୍ୱାମିତ୍ରଙ୍କ ଆଜ୍ଞାନୁସାରେ ଧନୁକୁ ମଝିରୁ ଧରି ଲୀଳାପୂର୍ବକ ଉଠାଇଲେ ଓ ଅନାୟସାରେ ଏଥିରେ ପ୍ରତ୍ୟଞ୍ଚା ସଂଯୋଜିତ କଲେ । ତା'ପରେ ସେ ଧନୁକୁ କାନ ପର୍ଯ୍ୟନ୍ତ ଟାଣି ଆଣିବା ଦ୍ୱାରା ତାହା ମଝିରୁ ଦୁଇଖଣ୍ଡ ହୋଇ ଭାଙ୍ଗିଗଲା । ବଳରାମଙ୍କ ପାଇଁ ଶ୍ରୀରାମ ବୀରତ୍ୱ, ଯଶ, ପୌରୁଷ ଦେଖାଇବା ପାଇଁ ଏହା ହେଉଛି ଉପଯୁକ୍ତ କ୍ଷେତ୍ର । ସେଥିପାଇଁ କବି ଅତି ସତର୍କତାର ସହିତ ଏହି ପ୍ରସଙ୍ଗରେ ବର୍ଣ୍ଣନା କରିଛନ୍ତି :-

ମଞ୍ଜୁଷା ଭିତରେ ଯେ ଶ୍ରୀରାମଚନ୍ଦ୍ର ପଶି,
ବାମ ଭୁଜେ ଧନୁ ଧଇଲେ ଆକ୍ରୋଶି ।
ବାହାର କରି ଧନୁ ଘେନି ଅଇଲେ ରଘୁନାଥ,
ଦେଖନ୍ତି ସର୍ବଜନେ କୋଦଣ୍ଡ ଅଛି ହସ୍ତ ।
ଆନନ୍ଦେ ଉଷତ ହୁଅନ୍ତି ସର୍ବନାରୀ,
ଧଇଲାରେ ଧନୁ ସମସ୍ତେ ଗୋଳକରି ।
ଦେଖି ବିଶ୍ୱାମଇତ୍ର ପୁଲକଇ ଶରୀର,
ସାଧୁ ସାଧୁ ଶବଦ ଶୁଭଇ ତିନିପୁର ।

ଏସବୁ ବର୍ଣ୍ଣନା ପରେ ଦର୍ଶକଙ୍କ ଦୃଷ୍ଟି ପୁଣିଥରେ କୋଦଣ୍ଡଧାରୀ ରାମଙ୍କୁ ଦେଖିବାକୁ ପାଇଛି:-

କୋଦଣ୍ଡ ଧରିଣ ଯେ ଅଛନ୍ତି ଦାଶରଥୀ,
ଗୁଣ ଦେବାକଇ ସେ ବିଚାରନ୍ତି ରାମ ମତି ।

ପୃଥିବୀର ଅନୁରୋଧରେ ଶ୍ରୀରାମ ଧନୁକୁ ପୃଥିବୀ ପୃଷ୍ଠରେ ନରଖି ବୃଦ୍ଧାଙ୍ଗୁଷ୍ଠର ନଖ ଉପରେ ରଖିଛନ୍ତି:-

ବୃଦ୍ଧାଙ୍ଗୁଷ୍ଠିର ନଖର ଉପରେ,
ତହିଁ ଧନୁହୁଳ ବସାଇଲେ ରଘୁବୀରେ ।
ଶରାସନ ମଉଳି ବାମକରେ ଧରି,
ଗୁଣଦେବା କଇ ଯେ ଆଣନ୍ତି ଓଟାରି ।
ମଡ଼ ମଡ଼ ହୋଇ ଯେ ଶୁଭିଲା ଶବଦ,
ଥରଥର ହୋଇ ଯେ କମ୍ପଇ ନବଖଣ୍ଡ ।
ଗୁଣଗାସି ରାମ ଦକ୍ଷିଣ କରେ ଧରି,
ଧନୁହୁଳ ଉପରେ ଦେଇକରି ଭରି ।

ଯହୁଂ ସେ ସାୟେକ ଯେ ଓଟାରି ଦେଲେ ଗୁଣ,
ଶିର ଲମ୍ବାଇଲେ ସକଳ ରାଜା ଗଣ ।

ବାରବରଷର ତନୟେ ଯେହା କଲେ,
ସୁବୁରି ମୁଖରେ ଯେ କାଳି ଲଗାଇଲେ ।
ଗୁଣ ଦେଇ ଯହୁଂ ଯେ ଧଇଲେ ସଜ୍ଜକରି,
ସଭାଜନମାନେ ଆନନ୍ଦ ସବୁକରି ।
ଧନୁଧରି ରାମ ଗୁଣ ଟଙ୍କାରନ୍ତି,
ଦେଖି ଜନକଙ୍କର ଫିଟିଲା ମନଭ୍ରାନ୍ତି ।
ଯେଥୁଣ ଶ୍ରୀରାମ ଯେ ଶାୟେକ କରେ ଧରି,
ଦକ୍ଷିଣ କରେ ଧନୁ ଆଣିଲେ ଉଛୁଡ଼ି ।

ଧନୁ ଶ୍ରୀରାମଙ୍କର ସଂପୂର୍ଣ୍ଣ ଆୟତ୍ତ ହୋଇଯିବାପରେ ନିଜର ପୁରୁଷାର୍ଥ ରକ୍ଷାକରିବାପାଇଁ ଶ୍ରୀରାମଙ୍କୁ ନିବେଦନ କରିଛି । ଅନ୍ୟସମୟ ହୋଇଥିଲେ ହୁଏତ ଶ୍ରୀରାମ କାକୁସ୍ଥ ବଚନ ଶୁଣି ଦୟା ପ୍ରକାଶ କରିଥାନ୍ତେ; କିନ୍ତୁ ବର୍ତ୍ତମାନ ଶକ୍ତି ପରୀକ୍ଷାରେ ବେଳ । ଧନୁକୁ ଆକର୍ଷଣ ନକଲେ ରାଜାମାନଙ୍କ ପାଖରେ ନିନ୍ଦିତ ହେବେ । ଦକ୍ଷଯଜ୍ଞରେ ଦେବତାଦଳ ସମୟରେ ଧନୁର ଯେଉଁ ପୌରୁଷ ପ୍ରକାଶ ପାଇଥିଲା, ଆଜି ତାହା ଅତୀତ ହୋଇଯାଇଛି । ଦେହ ଦେଇ ପରକାର୍ଯ୍ୟ କରିବାକୁ ଶ୍ରୀରାମ ତାକୁ ଅନୁରୋଧ କରିଛନ୍ତି ।

ଯେସନେକ ବଚନେ ତବନ୍ଦ ଶରାସନ,
ଗୁଣଧରି ରାମ ଉଛୁଡ଼ନ୍ତି ଗୁଣ ।
ଦକ୍ଷିଣ କର୍ଣ୍ଣମାୟେ ଓଟାରିଣ ଆଣି,
ଲାଠି ପରାୟେକ ହୋଇଲା ଯେ ପୁଣି ।

ଧନୁଭଗ୍ନ କାଳରେ ଶ୍ରୀରାମଙ୍କ ବିକ୍ରମ ରୂପ ସୀତାଙ୍କୁ ମୋହିତ କରିଛି । ଧନୁଗୁଣ ଆମଞ୍ଚନ କରିବା ସଙ୍ଗେ ସଙ୍ଗେ ସେ ସୀତାଙ୍କର ମନକୁ ଆକର୍ଷଣ କରିନେଇଛନ୍ତି । ଧନୁଭଗ୍ନର ଶେଷପର୍ଯ୍ୟାୟର ବର୍ଣ୍ଣନା କରି କବି କହୁଛନ୍ତି:-

ପୁଣ ପୁଣ ଧନୁ ଆଣନ୍ତି ଉଛୁଡ଼ି
ମଡ଼ ମଡ଼ ରାମଙ୍କୁ ଶୁଭିଲା ଚାପଧରି ।
ଆତ ଲାତ କରି ଉଛୁଡ଼ିଲେ ଯହୁଂ

ନିସତ ଟିଉ ଧନୁ ହୋଇଲାକ ତହୁଂ ।
ଅତିହିଂ ଆମଞ୍ଚନ୍ତେ ନିର୍ବଳ ଶରାସନ
ମଡ଼ ମଡ଼ ଶବଦ ଯେ ଶୁଭିଲା ଘନଘନ ।
ମଧରୁ ଭାଜିଲା ଯେ ବେନିଖଣ୍ଡ ହୋଇ,
ପୃଥ୍ୱୀ କମ୍ପିଲା ଯେ ଉଲ୍‌କାପାତ ହୋଇ ।

ଧନୁଭଙ୍ଗ ପ୍ରସଙ୍ଗରେ ତୁଳନାତ୍ମକ ଅଧ୍ୟୟନ କଲେ ବଳରାମଙ୍କୁ ଚିହ୍ନିବାରେ ସୁବିଧା ହୁଏ । ବାଲ୍ମୀକି ରାମାୟଣରେ ଧନୁଭଗ୍ନର ତିନୋଟି ଅବସ୍ଥା ବର୍ଣ୍ଣିତ । ଧନୁ ଉତ୍ତୋଳନ, ଗୁଣ ଆରୋପଣ ଓ ଧନୁଭଗ୍ନ । ବଳରାମ ଧନୁ ଉତ୍ତୋଳନ ପରେ ବୃଦ୍ଧାଙ୍ଗୁଷ୍ଠିର ନଖ ଉପରେ ଧନୁ ସ୍ଥାପନ କରି ଆଉ ଗୋଟିଏ ପର୍ଯ୍ୟାୟରେ ସୃଷ୍ଟି କରିଛନ୍ତି । ବାଲ୍ମୀକି ରାମାୟଣରେ ଏସବୁ ଘଟଣା ଏକାଦିକ୍ରମେ ଘଟିଯାଇଛି । ବଳରାମ ଏସବୁ ଅବସ୍ଥା ମଧ୍ୟରେ ପାଠକମାନଙ୍କ ମନରେ ଉତ୍କଣ୍ଠା ସୃଷ୍ଟି କରିବାପାଇଁ ଧନୁଭଗ୍ନ କାଳରେ ହେଉଥିବା ବିଭିନ୍ନ ପ୍ରତିକ୍ରିୟାର ଚିତ୍ରଣ କରିଛନ୍ତି । ଏସବୁ ତତ୍ତ୍ୱ ବାଲ୍ମୀକି ରାମାୟଣରେ ନାହିଁ । ମହାନାଟକ (୧/୨୯)ରେ ଲକ୍ଷ୍ମଣଙ୍କ ଅନୁରୋଧକ୍ରମେ ଶ୍ରୀରାମ ଧନୁହୁଳକୁ ପୃଥିବୀ ଉପରେ ନରଖି ନିଜ ଅଙ୍ଗୁଷ୍ଠି ଉପରେ ରଖିଛନ୍ତି । ବଳରାମଙ୍କ ରାମାୟଣରେ ଲକ୍ଷ୍ମଣ, ପୃଥିବୀ ଓ ଧନୁର ଅନୁରୋଧ ରହିଛି । ଧନୁଭଗ୍ନ କାଳରେ ଜନକଙ୍କ ଭ୍ରମ ଦୂର ହେବା, ରାମଙ୍କ ବିକ୍ରମ ରୂପ ଦର୍ଶନରେ ସୀତା ରାମଙ୍କ ପ୍ରତି ଆକୃଷ୍ଟ ହେବା ପ୍ରଭୃତି ବହୁ ନୂତନ ତଥ୍ୟର ମୂଳସ୍ରୋତ ବଳରାମଙ୍କ କଳ୍ପନାମୁଖର ପ୍ରତିଭା ।

## ଅଯୋଧ୍ୟାକୁ ସମ୍ବାଦ ପ୍ରେରଣ :

ଧନୁଭଗ୍ନ ପରେ ଦଶରଥଙ୍କୁ ଖବର ଯିବାକଥା ବର୍ଣ୍ଣନା କଲାବେଳେ ଏକପକ୍ଷରେ ବାଲ୍ମୀକି ଓ ଅନ୍ୟପକ୍ଷରେ ବ୍ୟାସ, ବଳରାମ, କୃତିବାସ ଓ ତୁଳସୀ ଦାସ । ବାଲ୍ମୀକି ରାମାୟଣରେ ଜନକ କହିଛନ୍ତି, "କୁଶିକ ନନ୍ଦନ ! ମୁଁ ସୀତାଙ୍କୁ ବୀର୍ଯ୍ୟଶୁଳ୍କା ରୂପେ ଘୋଷଣା କରିଥିଲି । ସେ ସତ୍ୟ ଆଜି ପୂର୍ଣ୍ଣ ହେଲା । ସୀତା ମୋର ପ୍ରାଣସମା । ମୁଁ ମୋର ଏହି କନ୍ୟାକୁ ଶ୍ରୀରାମଙ୍କୁ ସମର୍ପଣ କରିବି । ଯଦି ଆପଣଙ୍କ ଆଜ୍ଞାହୁଏ, ତାହେଲେ ମୋର ମନ୍ତ୍ରୀ ଅଯୋଧ୍ୟାକୁ ଯିବେ ଏବଂ ଏସବୁ ଘଟଣା କହି ଦଶରଥଙ୍କୁ ମିଥିଳାକୁ ନେଇଆସିବେ ।" ବିଶ୍ୱାମିତ୍ରଙ୍କ ସମ୍ମତି ପ୍ରାପ୍ତହୋଇ ଜନକ ଅଯୋଧ୍ୟାକୁ ଦୂତ ପ୍ରେରଣ କରିଥିଲେ । ବଳରାମ ଦାସଙ୍କ ରାମାୟଣରେ ଧନୁଭଗ୍ନ ପରେ ବିଶ୍ୱାମିତ୍ର ପ୍ରଥମେ ରାମ-ସୀତାଙ୍କ ବିବାହର ପ୍ରସ୍ତାବ

ଆଣିଛନ୍ତି । ଏହାପରେ ଜନକ କହିଛନ୍ତି ରାମଙ୍କୁ । ଜନକଙ୍କ ପ୍ରସ୍ତାବରେ ଶ୍ରୀରାମ ନିଶ୍ଚିତଭାବେ ଆନନ୍ଦିତ ହୋଇଥିଲେହେଁ ପିତାଙ୍କ ଅଜାଣତରେ ବିବାହହେବା କଥାକୁ ସେ ପସନ୍ଦ କରିପାରୁନଥିଲେ । ସେଥିପାଇଁ ସେ କହିଲେ-

ପିତା ଦଶରଥ ଅଛନ୍ତି ମୋର ଦେହୀ,
ପ୍ରାଣର ଅଧିକାରୀ ପିତା ସେ ଅଟଇ ।
ତାହାଙ୍କୁ ନ କହିଣ ହୋଇବି କେଦ୍ନେ ବିଭା,
ପିତା ଅସନମତେ ଦିଶିବ ଅଶୋଭା ।

ଶ୍ରୀରାମଙ୍କ ପ୍ରସ୍ତାବ ସମସ୍ତଙ୍କ ମନକୁ ପାଇଗଲା । ସତ୍ୟାନନ୍ଦ ଶ୍ରୀରାମଙ୍କ ଲେଖ ଘେନି ଅଯୋଧ୍ୟାକୁ ଯାତ୍ରାକଲେ । ତୁଳସୀ ରାମାୟଣରେ ଧନୁଭଗ୍ନ ପରେ ବିଶ୍ୱାମିତ୍ର କହୁଛନ୍ତି, ହେ ବୁଦ୍ଧିମାନ ରାଜା, ଶୁଣ । ବିବାହ ହେବା ଧନୁର ଅଧୀନ ଥିଲା । ଧନୁଭଗ୍ନ ପରେ ବିବାହ ହୋଇଗଲା । ଦେବତା, ନର ଓ ନାଗର ଏହାର ସାକ୍ଷୀ । ତଥାପି କୁଳରୀତି ଅନୁଯାୟୀ ବିବାହ ସଂପନ୍ନ କର । ତାଙ୍କର ପରାମର୍ଶ ଅନୁଯାୟୀ ଜନକ ଚିଠି ଲେଖି ଅଯୋଧ୍ୟାକୁ ଦୂତ ପ୍ରେରଣ କରିଥିଲେ । କୃତ୍ତିବାସ ରାମାୟଣରେ ବିଶ୍ୱାମିତ୍ର ଶ୍ରୀରାମ ଓ ଲକ୍ଷ୍ମଣଙ୍କୁ ବିବାହ କରିବାପାଇଁ ନିବେଦନ କରିବାରୁ ଶ୍ରୀରାମ କହିଛନ୍ତି :

ଶ୍ରୀରାମ କହେନ୍ ପ୍ରଭୁ ନିବେଦ ତୋମାରେ,
ଆମା ଦୋହେଁଲଯେ ଚଲ ଅଯୋଧ୍ୟା ନଗରେ ।
ବହୁଦିନୁ ଆସିଯାଛି ତୋମାର ସହିତ,
ବିଲମ୍ବ ହଇଲେ ପିତା ହବେନ୍ ଚିନ୍ତିତ ।
ଚାରିଭାଇ ଜନ୍ମ ଲଯିଯାଛି ଯେକ ଦିନେ,
ସେ ସବାର ଛାଡ଼ିକରି ବିବାହ କେସନେ ।
ଯେ ଚାରି ଭ୍ରାତା କେ ଯେଇ କନ୍ୟା ଦେବେ ଚାରି,
ଚାରିଭାଇ ବିବାହ କରିବେ ଘରେ ତାରି ।

ଏ ପ୍ରସ୍ତାବ ଶୁଣିବାକ୍ଷଣି କୌଶିକଙ୍କ ମସ୍ତକରେ ସତେଅବା ଆକାଶ ଖସିପଡ଼ିଲା । ସେ ଅତ୍ୟନ୍ତ ଦୁଃଖରେ ଜନକଙ୍କ ପାଖରେ ପହଞ୍ଚିଲେ ଓ ଶ୍ରୀରାମଙ୍କ ମନକଥା ପ୍ରକାଶ କଲେ । ଶ୍ରୀରାମଙ୍କ କଥା ଶୁଣି ଜନକ ଋଷି ମଧ୍ୟ ଚିନ୍ତାଗ୍ରସ୍ତ ହୋଇ କହିଲେ :

ସୀତା ବିନା କନ୍ୟା ନାହିଁ ଆଉ ପାବ କୋଥା ।

ଜନକଙ୍କ ଚିନ୍ତିତ ଦେଖି ସତ୍ୟାନନ୍ଦ ଆଶ୍ୱାସନା ଦେଇଛନ୍ତି :
ଚବଘରେ ଚାରିକନ୍ୟା ହଇବେ ଘଟନ ।

କୁଶଧ୍ୱଜଙ୍କର ଦୁଇକନ୍ୟା ଏବଂ ତୁମର ଦୁଇଟି ଦୁହିତା । ଏହାପରେ ବିଶ୍ୱାମିତ୍ର ନିଜେ ଘଟକ ଭାବରେ ଅଯୋଧ୍ୟାପୁରକୁ ଯାଇ ଦଶରଥଙ୍କ ସମ୍ମୁଖରେ ସମାଚାର ବର୍ଣ୍ଣନା କରିଛନ୍ତି । ଅଧ୍ୟାତ୍ମ ରାମାୟଣରେ ଧନୁଭଗ୍ନ ଜନକ ବିଶ୍ୱାମିତ୍ରଙ୍କୁ ଦଶରଥଙ୍କ ପାଖରେ ପତ୍ର ଦେବାପାଇଁ ଅନୁରୋଧ କରିଛନ୍ତି । ବିଶ୍ୱାମିତ୍ର ପତ୍ର ଲେଖି ପୁତ୍ର, ମହିଷୀ ଓ ମନ୍ତ୍ରୀମାନଙ୍କ ସହିତ ମିଥିଳାକୁ ଆସିବା ପାଇଁ ଦଶରଥଙ୍କୁ ଅନୁରୋଧ କରିଛନ୍ତି । ଶୀଘ୍ରଗାମୀ ଦୂତମାନଙ୍କ ଦ୍ୱାରା ଏହି ପତ୍ର ପ୍ରେରିତ ହୋଇଥିଲା । ବିବାହ ପ୍ରସ୍ତାବ ବର୍ଣ୍ଣନା କଲାବେଳେ ବାଲ୍ମୀକି ତୁଳସୀ ଦାସ ଓ ଅଧ୍ୟାତ୍ମ ରାମାୟଣର ଲେଖକ ଜନକ ଓ ବିଶ୍ୱାମିତ୍ରଙ୍କ ପରାମର୍ଶ ମଧ୍ୟରେ ଏ କଥାକୁ ସୀମିତ କରିଥିବାବେଳେ ବଳରାମ ଓ କୃତ୍ତିବାସ ରାମଙ୍କ ପରାମର୍ଶ ଚାହିଁଛନ୍ତି । ବଳରାମଙ୍କ ରାମାୟଣରେ ଶ୍ରୀରାମଙ୍କ ପିତୃଭକ୍ତି ପ୍ରକାଶ ପାଇଥିବାବେଳେ କୃତ୍ତିବାସ ରାମାୟଣରେ ଭ୍ରାତୃପ୍ରେମ ପ୍ରକାଶ ପାଇଛି । ବାଲ୍ମୀକି, ତୁଳସୀ ଦାସ ଓ ଅଧ୍ୟାତ୍ମ ରାମାୟଣର ଜନୈକ ଦୂତ ପ୍ରେରିତ ହୋଇଥିବାବେଳେ ବଳରାମ ଦାସଙ୍କ ଦୂତ ହୋଇଛନ୍ତି ରାଜ-ପୁରୋହିତ ସତ୍ୟାନନ୍ଦ ଏବଂ କୃତ୍ତିବାସ ରାମାୟଣରେ ବିଶ୍ୱାମିତ୍ର ଏହି ସୁସମ୍ବାଦ ନେଇ ଅଯୋଧ୍ୟାକୁ ଗମନ କରିଛନ୍ତି ।

ଚିଠି ଦେବାକଥା ଅଧ୍ୟାତ୍ମ ରାମାୟଣରୁ ଆରମ୍ଭ ହୁଏ । ଏଥିରେ ଚିଠି ଲେଖିଲେ ବିଶ୍ୱାମିତ୍ର । ତୁଳସୀ ରାମାୟଣରେ ନିଜେ ଜନକ ଏହି ଚିଠି ଲେଖିଲେ । ଅଥଚ ଜଗମୋହନ ରାମାୟଣରେ ଶ୍ରୀରାମ ସ୍ୱହସ୍ତରେ ଚିଠି ଲେଖି ପିତା ଦଶରଥଙ୍କୁ ସମସ୍ତ ସମାଚାର ଜଣାଇଥିଲେ । ଚିଠି ଲେଖକଙ୍କର ଭିନ୍ନତା ସତ୍ତ୍ୱେ ଅଧ୍ୟାତ୍ମ ରାମାୟଣର ଚିଠିକଥା ଉତ୍ତରଭାରତ ତଥା ଓଡ଼ିଶାର କବିଙ୍କୁ ସମାନଭାବରେ ପ୍ରଭାବିତ କରିଥିଲା ।

## ରତ୍ନଚୂଡ଼ିରେ ଶ୍ରୀରାମଙ୍କ ଦର୍ଶନ :

ଶ୍ରୀରାମଙ୍କ ପ୍ରତି ସୀତାଙ୍କ ଅନୁରାଗର ବିଭିନ୍ନ ଦୃଶ୍ୟ ମଧ୍ୟରୁ ଏହା ଅନ୍ୟତମ । ବିବାହପରେ ପଞ୍ଚଗ୍ରାସୀ କଲାବେଳେ ବର ଓ କନ୍ୟା ଏକତ୍ର ଭୋଜନ କରିଥାନ୍ତି । ସେହି ସମୟରେ ଶ୍ରୀରାମଙ୍କ ରୂପ ସୀତାଙ୍କର ରତ୍ନଚୂଡ଼ିରେ ପ୍ରତିବିମ୍ବିତ ହୁଏ । ସୀତା ସେହି ରୂପକୁ ଦେଖିବାକ୍ଷଣି ଏତେ ବିମୋହିତ ହୋଇଯାଇଥିଲେ ଯେ ସେ ରତ୍ନଚୂଡ଼ିକୁ ସଞ୍ଚାଳନ ନକରି ଶ୍ରୀରାମଙ୍କ ରୂପସୁଧା ପାନ କରିବାକୁ ଲାଗିଲେ । ସୀତାଙ୍କ ଏତାଦୃଶ ଅବସ୍ଥା

ସେଠାରେ ଉପସ୍ଥିତ ଥିବା ସଖୀମାନଙ୍କ ମନରେ କୌତୂହଳ ସୃଷ୍ଟି କରିଥିଲା ଓ ସେମାନେ ଏହାର ବିଭିନ୍ନ ପ୍ରକାର ବ୍ୟାଖ୍ୟା କରିବାକୁ ଲାଗିଲେ । ଜଣେ ସଖୀ ମନ୍ତବ୍ୟ ଦେଇ କହିଲା

କେ ବୋଲଇ କିମ୍ପା ଗୋ ନଭୁଞ୍ଜଇ ସତୀ
କେ ବୋଲଇ ଆଗ ଭୁଞ୍ଜିଲେ ତା ପତି ।
ଉଚ୍ଛିଷ୍ଟ ବୋଲି ଥିବା ନକଲେ ଆହାର
ବିଭାର କାଳେ ମାଗୋ ଏସନେକ ବେଭାର ।

ଅନ୍ୟ ଜଣେ କହିଲା, ସେ କଥା ନୁହେ, ଏତେ ଲୋକ ଦେଖି ସୀତା ହୁଏତ ଲାଜରେ ଖାଉନାହାନ୍ତି-

କେ ବୋଲଇ ଅବା ଆମ୍ଭଙ୍କୁ ଲାଜକଲା
ବହୁତ ଲୋକ ଦେଖି ଅନ୍ନ ନଭୁଞ୍ଜିଲା ।
ଚାଲ ଏହାଙ୍କ ଆଗୁ ଆମ୍ଭେ ଉଠିଯିବା
ଦିନକର ଉପାସୀ ଏ ଏହାଙ୍କ ସନ୍ନିଧେ ନଥିବା ।

ଏହିପରି ତର୍କ ବିତର୍କ ଚାଲିଥିବାବେଳେ କେତେକ ସିହାଣୀ ପ୍ରକୃତରହସ୍ୟ ପ୍ରକାଶ କରି କହିଲେ :

ବିଚାରି ବୋଲନ୍ତି ସେ ଥୋକାଏ ସ୍ତିରୀଜନ
ଆମ୍ଭେ ମଣିଲୁନି ସୀତଯାର ମନ ।
ଅନ୍ନ ଭୁଞ୍ଜିଣ ସେ ବଢ଼ାଇଲା ହସ୍ତ
ରନ୍ ବାହାରେ ଯେ ଦିଶିଲେ ପ୍ରାଣନାଥ ।
ସ୍ୱାମୀର ବଦନ ଦେଖିଣ ସୁନ୍ଦେରୀ
ଅନ୍ନ ନଭୁଂଜି ସେ ଅଛି ଲଯେ କରି ।
ହସ୍ତ କାଢ଼ିଦେଲେ ନଦିଶିବେ ନାହା
ତେଣୁ କରି ଦେବୀ ନଚାଳଇ ତାହା ।

ମନର ଗୁପ୍ତକଥା ସମସ୍ତେ ଜାଣିଯିବାରୁ ସୀତା ଆଉ ଅପେକ୍ଷା ନକରି ଭୋଜନ କରିବାରେ ଲାଗିଲା । ଦୃଶ୍ୟଟି ଅତି ସାଧାରଣ ହେଲେହେଁ ପୀତବସନ ତଥା ମୁକୁଟ-କୁଣ୍ଡଳ ହାର-ସୁଶୋଭିତ ଶ୍ରୀରାମଙ୍କ ସର୍ବାଙ୍ଗ ସୁନ୍ଦର ରୂପ ସୀତାଙ୍କ ମନ ମଧ୍ୟରେ ଯେଉଁ

ଆଲୋଡ଼ନ ସୃଷ୍ଟିକରିଥିଲା, ତାହାର ଏହା ହେଉଛି ଏକ ରସପୂର୍ଣ୍ଣ ଚିତ୍ର ତଥା ରାମ ଓ ସୀତାଙ୍କ ନିବିଡ଼ ପ୍ରେମର ପ୍ରଥମ ସୂଚନା । ଲୋକ ମନରେ ଏହାର ପ୍ରଭାବ ଲକ୍ଷ୍ୟକରି ତୁଳସୀ ଦାସ ମଧ୍ୟ ଏହି ଦୃଶ୍ୟଟିକୁ ନିଜ ରାମାୟଣରେ ଲିପିବଦ୍ଧ କରିଛନ୍ତି । ବିବାହ କାଳରେ ଲହକୌର (ପରସ୍ପରକୁ ଗ୍ରାସଦେବା) ରୂପୀ ଲୌକିକ ରୀତି ପାଳିତ ହୋଇଛି । ପାର୍ବତୀ ରାମଙ୍କୁ ଓ ସରସ୍ୱତୀ ଗ୍ରାସଦେବା ଶିକ୍ଷା ଦେଉଛନ୍ତି । ସଖୀମାନଙ୍କର କୌତୁକ ବିନୋଦ ଓ ହାସ ପରିହାସରେ ଅନ୍ତଃପୁର ମୁଖରୀତ । ସେହି ଉତ୍ସବ ବେଳେ ସୀତା ନିଜ ହାତର ମଣିରେ ଶ୍ରୀରାମଙ୍କ ପ୍ରତିବିମ୍ବ ଦେଖି ବିମୋହିତ ହୋଇଗଲେ ଏବଂ ଦର୍ଶନ-ବିଯୋଗ ଭୟରେ ବାହୁ ଓ ଦୃଷ୍ଟିକୁ ସ୍ଥିର ରଖି ଶ୍ରୀରାମଙ୍କ ଅନିନ୍ଦ୍ୟ ସୁନ୍ଦର ରୂପକୁ ଦେଖିବାରେ ଲାଗିଲେ ।

ନିଜ ପାନିମନି ମହୁଁ ଦେଖି ପ୍ରତିମୂରତି ସ୍ୱରୂପ ନିଧାନକି
ଚାଲତି ନ ଭୁଜବଲ୍ଲୀ ବିଲୋକିନୀ ବିରହ ଭୟ ବସ ଜାନକୀ ।
(ବାଳକାଣ୍ଡ)

**ସୀତାଙ୍କ ସପତଣୀଭାବ :**

ବିବାହ ପରେ ଅଯୋଧ୍ୟା ଫେରୁଥିବାବେଳେ ପରଶୁରାମ ଶ୍ରୀରାମଙ୍କ ଶକ୍ତି ପରୀକ୍ଷା କରିବା ପାଇଁ ବୈଷ୍ଣବଧନୁ ସମର୍ପଣ କରିଥିଲେ । ଧନୁ ଦେଖି ସପତଣୀ ଭୟରେ ସୀତାଙ୍କ ହୃଦୟ ଥରିଉଠିଥିଲା । ସେ ଭାବିବାକୁ ଲାଗିଲେ, ମିଥିଳାରେ ଧନୁଭାଙ୍ଗି ଶ୍ରୀରାମ ମୋତେ ବିବାହ ହୋଇଥିଲେ । ବୋଧହୁଏ ଏହି ଋଷି ଧନୁଭଗ୍ନ ପଣରଖି ନିଜ କନ୍ୟାର ବିବାହ ପାଇଁ ଶ୍ରୀରାମଙ୍କୁ ଆଉ ଏକ ଧନୁ ପ୍ରଦାନ କରୁଛନ୍ତି । ସେଥିପାଇଁ ସେ କହିଛନ୍ତି :

କୁହନ୍ତେ ସପତଣୀ ହୋଇଲା ମୋତେ ଆସି ।

ବାଲ୍ମୀକି ରାମାୟଣରେ ସୀତାଙ୍କ ସପତଣୀ ଭାବର କୌଣସୀ ସୂଚନା ମିଳେ ନାହିଁ । ଅଥଚ ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ ଉତ୍ତର ଓ ପୂର୍ବଭାରତରେ ଏହା ଏକ ବିଶିଷ୍ଟ ପ୍ରବୃତ୍ତି ରୂପେ ଦେଖାଦେଲା । କୃତ୍ତିବାସ ଏହାର ଉଲ୍ଲେଖ କରି ଲେଖିଛନ୍ତି :

ଏକବାର ଧନୁକ୍ ଭାଙ୍ଗିୟା ଅକସ୍ମାତ୍
ବିବାହ କରିଲେନ୍ ଆମାରେ ରଘୁନାଥ ।

ଆରବାର ଧନୁକ୍ ଆନିଲେ ଭୃଗୁମୁନି
ନାହି ଛାନି ହବେ ମୋରେ କତ ସପତନି

(ଆଦି ୧/୬୩)

ତୁଳସୀ ରାମାୟଣରେ ଏହାର ସୂଚନା ନଥିଲେହେଁ, ଉତର ଭାରତର ଅନ୍ୟ ଏକ ପ୍ରସିଦ୍ଧ ରାମାୟଣ 'ଗୋବିନ୍ଦ ରାମାୟଣ'ରେ ଏହି ଭାବନାର ଉଲ୍ଲେଖ ରହିଛି :

ତୋର ଶରାସନ ଶଙ୍କର କୋ ଦିମି,
ମୋହିଁ ବଇଯୋ ତିମି ଊର ବରେମି ।

ସେହିପରି ଆରଣ୍ୟକ କାଣ୍ଡରେ ନାରଦ ମୋହ ଉପାଖ୍ୟାନ । ତୁଳସୀ ଦାସ ବିଷ୍ଣୁଙ୍କ ଅବତାରର ଅନ୍ୟତମ କାରଣ ରୂପେ ଏହାକୁ ଗ୍ରହଣ କରିଥିବାବେଳେ ବଳରାମ ଦାସ ସୀତାଙ୍କ ଅପହରଣ ପରେ ଶ୍ରୀରାମଙ୍କ ଦୁଃଖ ଆତୁରତାର କାରଣ ରୂପେ ଏହି କଥାର ଅବତାରଣା କରିଛନ୍ତି ।

ତୁଳସୀ ଦାସଙ୍କ ବର୍ଣ୍ଣିତ ପ୍ରତାପଭାନୁ ଉପାଖ୍ୟାନ ଓଡ଼ିଶା ତଥା ଉତର ଭାରତକୁ ସଂଯୋଗ କରିବାରେ ଏକ ମୁଖ୍ୟ ସୂତ୍ର । ହିନ୍ଦି ଆଲୋଚକମାନେ ପ୍ରତାପଭାନୁ ଉପାଖ୍ୟାନର କୌଣସି ମୂଳସ୍ରୋତ ଅନୁସନ୍ଧାନ କରିବାରେ ଅକ୍ଷମ ହୋଇଛନ୍ତି । କେହି କେହି ଏହାକୁ ବାଲ୍ମୀକି ରାମାୟଣର ସୌଦାସ ଉପାଖ୍ୟାନ ସହିତ ସଂଯୋଗ କରିବାକୁ ଚେଷ୍ଟା କରିଥିଲେ ହେଁ ସେଥିରେ ସେମାନଙ୍କ ଅକ୍ଷମତା ହିଁ ବିଶେଷଭାବେ ପ୍ରକାଶ ପାଇଛି । ଅନ୍ୟପକ୍ଷରେ ଏହା ହେଉଛି ସୂର୍ଯ୍ୟବଂଶୀୟ ପ୍ରତାପରୁଦ୍ରଙ୍କ କଥା । ତୁଳସୀ ରାମାୟଣରେ ନୀଳାଚଳର ପ୍ରଶଂସା ଏହି ଅନୁମାନକୁ ଆହୁରି ଦୃଢ଼ କରେ । ବଳରାମଙ୍କ ପରି ତୁଳସୀ ଦାସ ମଧ ରାମାୟଣର ବକ୍ତା ଓ ଶ୍ରୋତା ରୂପେ ଶିବ ଓ ପାର୍ବତୀଙ୍କୁ ଉପସ୍ଥାପିତ କରିଛନ୍ତି । ଉଭୟ ରାମାୟଣର ଆତ୍ମା ହେଉଛି ରାମଭକ୍ତି । ତୁଳସୀ ଦାସଙ୍କ ଅପେକ୍ଷା ବଳରାମ କେତେକ ବର୍ଣ୍ଣନାରେ ଅଧିକ ଶୃଙ୍ଗାରିକ ହେଲେହେଁ ଶ୍ରୀରାମଙ୍କ ଭଗବାନତ୍ୱ ପ୍ରତିପାଦନ କରିବାରେ ଏହା ଆଦୌ ବାଧା ସୃଷ୍ଟି କରିନାହିଁ ।

ବଳରାମଙ୍କ ରାମାୟଣର ଆଲୋଚନା କଲାବେଳେ କେବଳ ଆଦିକାଣ୍ଡରୁ ମୁଖ୍ୟ ଭାବେ ଆଲୋଚନା ପରିସର ମଧ୍ୟରୁ ଅଣାଯାଇଥିଲେହେଁ ଅନ୍ୟସବୁ କାଣ୍ଡରେ ଥିବା

ପାର୍ଥକ୍ୟରୁ ମଧ୍ୟ କବିଙ୍କ ସ୍ୱକୀୟତା ପ୍ରକାଶିତ ହୋଇଥାଏ । ଅର୍ଥାତ ବଳରାମ ଜଗମୋହନ ରାମାୟଣର ରୂପଦାନ କଲାବେଳେ ବିଭିନ୍ନ ପୁରାଣ, କାବ୍ୟ, ନାଟକ ଓ ଲୋକକଥାରୁ ସାହାଯ୍ୟ ଗ୍ରହଣ କରିଥିଲେ । ବେଳେ ବେଳେ କଥାକୁ ପରିମାର୍ଜିତ କରି ଯୁଗ ରୁଚିର ଅନୁକୂଳ କରିଥିଲେ । ଏହି ପ୍ରକାଶ ପ୍ରକ୍ରିୟାରେ ହିଁ କବିଙ୍କ ମୌଳିକତା ନିହିତ । ସେ ଯୁଗର ପ୍ରତ୍ୟେକ ଭାରତୀୟ କବିଙ୍କ ରଚନାରେ ଏହାହିଁ ଏକ ବୈଶିଷ୍ଟ୍ୟ ଭାବେ ପ୍ରକାଶିତ ହେଉଥିଲା । ସେମାନେ ନିଜ କଳ୍ପନାରୁ ଏକ ମୌଳିକ କାବ୍ୟ ରଚନାକରି ପ୍ରାଚୀନ ସାମଗ୍ରୀକୁ ନୂଆ  ରୂପ ଦେବାପାଇଁ ବିଶେଷ ଆଗ୍ରହୀ ଥିଲେ । ବଙ୍ଗ ସାହିତ୍ୟର କୃତ୍ତିବାସ ଓ ହିନ୍ଦୀ ସାହିତ୍ୟର ତୁଳସୀ ଓ କେଶବଙ୍କ ରଚନାରେ ମଧ୍ୟ ଏହି ପ୍ରଚେଷ୍ଟା ଦେଖିବାକୁ ମିଳେ । ସେମାନେ ସମସ୍ତେ ପ୍ରାଚୀନ ସାମଗ୍ରୀରେ ନୂତନତାର ସମାବେଶ କରି ସେ ଯୁଗର ଜନସମାଜ ପାଇଁ ଏକ ନୂଆ ଆଦର୍ଶ ପ୍ରତିଷ୍ଠା, କରିବା ସଙ୍ଗେ ସଙ୍ଗେ ପ୍ରାଚୀନ କାବ୍ୟ ଓ ପୁରାଣର ପ୍ରକାଶ ଶୈଳୀ, ଅଳଙ୍କାର ଯୋଜନା ଓ ବର୍ଣ୍ଣନା ପାଟବତା ସହିତ ସାଧାରଣ ଜନତାକୁ ପରିଚିତ କରାଇ ପାରିଥିଲେ । ଏହି ଯୁଗୋଚିତ କାର୍ଯ୍ୟଦ୍ୱାରା ହିଁ ସେମାନଙ୍କ ମହାନତା ପରିସ୍ଫୁଟ ହୋଇଥିଲା ।

ପ୍ରାଚୀନ କଥନକୁ ବଳରାମ ଯେ ନୂଆରୂପ ପ୍ରଦାନ କରିଥିଲେ, ତା ନୁହେଁ । ନୂତନ କଥା ସବୁକୁ ଉପସ୍ଥାପନ କଲାବେଳେ ସେ ନିଜର ଉଦ୍ଦେଶ୍ୟ ତଥା ଆଦର୍ଶକୁ ସେଥିରେ ସନ୍ନିବିଷ୍ଟ କରିଥିଲେ । ରାମ ଓ ଜଗନ୍ନାଥଙ୍କୁ ଅଭିନ୍ନ ରୂପେ ପ୍ରତିପାଦନ କରି ସେ ଓଡ଼ିଆ ଜାତି ପାଇଁ ଏକ ନୂଆ ଆଦର୍ଶର ପ୍ରତିଷ୍ଠା କଲେ । ଆରଣ୍ୟକକାଣ୍ଡରେ ସେ ରାମ, ସୀତା ଓ ଲକ୍ଷ୍ମଣଙ୍କୁ ପୁରୀକ୍ଷେତ୍ରକୁ ଆଣି ଦେଖାଇଦେଲେ । ଯେ ରାମ, ସୀତା ଓ ଲକ୍ଷ୍ମଣ ହେଉଛନ୍ତି ଯଥାକ୍ରମେ ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ର ।

ଅତୀତରେ ଓଡ଼ିଆ ବାଣିଜ୍ୟ ସୂତ୍ରରେ ପୂର୍ବଭାରତୀୟ ଦ୍ୱୀପପୁଞ୍ଜ ସହିତ ସଂପୃକ୍ତ ଥିଲା । ଓଡ଼ିଶାର ରାଜପୁତ ଓ ସାଧବ ପୁଅମାନେ ଯାଇ ବାଲି, ଜାଭା, ସୁମାତ୍ରାରେ ନିଜର ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ । ଷୋଡ଼ଶ ଶତାବ୍ଦୀବେଳକୁ ଏହିସବୁ ଦ୍ୱୀପପୁଞ୍ଜ ସହ ଓଡ଼ିଶାର ସଂପର୍କ ବୋଧହୁଏ ଅବ୍ୟାହତ ଥିଲା । ସେଥିପାଇଁ ରାମକଥାର ରୂପଦାନ କଲାବେଳେ ଓଡ଼ିଶାର କବିମାନେ ବିଶେଷକରି ସାରଳା ଓ ବଳରାମ ଏହି ଦ୍ୱୀପପୁଞ୍ଜରେ ପ୍ରଚଳିତ ଥିବା କେତୋଟି କଥାକୁ ନିଜ ରାମାୟଣରେ ଗ୍ରହଣ କରିଥିଲେ । ସାରଳା ମହାଭାରତରେ ଥିବା ବାଳୀ-ସୁଗ୍ରୀବ ଓ ହନୁମାନଙ୍କ ଜନ୍ମକଥା ଏହାର ଉଦାହରଣ । ଜଗମୋହନ ରାମାୟଣରେ

ମଧ୍ୟ ଅହଲ୍ୟାଙ୍କ ସନ୍ତାନଭାବେ ବାଳୀ ଓ ସୁଗ୍ରୀବଙ୍କ ଉଲ୍ଲେଖ ମାୟାଶୀର୍ଷ ଓ ମାୟାସୀତା କଥା, ବକ ଓ ଚକ୍ରବାଳ କଥା ବିଭୀଷଣ ପୁତ୍ରୀଭାବେ ତ୍ରିଜଟାର ଉଲ୍ଲେଖ ପ୍ରଭୃତି କଥା ଭାରତର ଅନ୍ୟାନ୍ୟ ଅଞ୍ଚଳରେ ମିଳୁଥିଲେହେଁ ପୂର୍ବଭାରତୀୟ ଦ୍ୱୀପପୁଞ୍ଜରେ ପ୍ରଚଳିତ ରାମକଥା ସହ ଓଡ଼ିଶାକୁ ଘନିଷ୍ଠଭାବେ ସଂପୃକ୍ତ କରିଥିବା ଜଣାଯାଏ ।

ବଳରାମ ଦାସ ଜଗମୋହନ ରାମାୟଣ ରଚନା କରି କେବଳ ଯେ ସଂସ୍କୃତ ଭାଷାରେ ପ୍ରସିଦ୍ଧି ଲାଭ କରିଥିବା ରାମକଥାର ବିଭିନ୍ନ ରୂପକୁ ଓଡ଼ିଶାବାସୀଙ୍କୁ ଉପହାର ଦେଇଥିଲେ, ତା' ନୁହେଁ । ସେ ଦକ୍ଷିଣ ଭାରତରେ ପ୍ରସିଦ୍ଧିଲାଭ କରିଥିବା କମ୍ବନ ରାମ ଉପାଖ୍ୟାନ ସବୁକୁ ଗ୍ରହଣକରି ଓଡ଼ିଶାକୁ ଅଖଣ୍ଡ ଭାରତର ଏକ ଅବିଭକ୍ତ ଅଂଶରୂପେ ପ୍ରତିପାଦିତ କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ରାମକଥାକୁ ଏକ ଭାରତୀୟ ରାମକଥାରେ ପରିଣତ କରିବାକୁ ସମର୍ଥ ହୋଇଥିଲେ ।

## ଶ୍ରୀମଦ୍ ଭଗବତ୍ ଗୀତା :

ଜଗମୋହନ ରାମାୟଣ ପରି 'ଶ୍ରୀମଦ୍ ଭଗବତଗୀତା' ଏକ ଲୋକପ୍ରିୟ ଗ୍ରନ୍ଥ । ଓଡ଼ିଶାରେ ବିଭିନ୍ନ ଭାଗବତ ଗାଦିରେ ଯେଉଁ ଭାଗବତ ସପ୍ତାହ ପାଳିତ ହୁଏ, ସେଥିରେ ଜଗନ୍ନାଥ ଦାସଙ୍କ ଭାଗବତ ପଢ଼ାହେବାପରେ ବଳରାମଙ୍କ ରଚିତ ଶ୍ରୀମଦ୍ ଭଗବତ୍ ଗୀତାର ଅନୁବାଦ ପଢ଼ାହୋଇ ଭାଗବତ ସପ୍ତାଉତ୍ସବ ସମାପ୍ତ ହୋଇଥାଏ ।

ରାମାୟଣ, ଭାଗବତ ଓ ମହାଭାରତ ହିନ୍ଦୁମାନଙ୍କର ତିନୋଟି ବିଶିଷ୍ଟ ଧର୍ମଗ୍ରନ୍ଥ । ଯୁଗ ଯୁଗଧରି ହିନ୍ଦୁଜାତିର ଚରିତ୍ରଗଠନରେ ଏମାନେ ସହାୟକ । ଓଡ଼ିଆ ସାହିତ୍ୟର ଆଦିଯୁଗରେ ଓଡ଼ିଆ କବିମାନେ ବିଶେଷକରି ସାରଳା ଦାସ ଓ ବଳରାମ ଦାସ ଏ ବିଷୟରେ ସଚେତନ ଥିବା ଜଣାଯାଏ । ସେଥିପାଇଁ ସାରଳା ଦାସ ସଂପୂର୍ଣ୍ଣ ମହାଭାରତକୁ ଓଡ଼ିଆରେ ରୂପାନ୍ତରୀତ କଲେ । ଚଣ୍ଡୀପୁରାଣକୁ ଭାଗବତ ଆଖ୍ୟାଦେଇ ରଚନା କଲେ । ରାମାୟଣ ପାଇଁ ସେ ରଚନାକଲେ ବିଚିତ୍ର ରାମାୟଣ । ବଳରାମ ଦାସ ମଧ୍ୟ ସଂପୂର୍ଣ୍ଣ ରାମାୟଣକୁ ଜଗମୋହନ ରାମାୟଣ ନାମରେ ପ୍ରକାଶକଲେ । ଶ୍ରୀମଦ୍ ଭଗବତ୍ ଗୀତାର ଅନୁବାଦ କରି ସେ ମହାଭାରତର ଅଭାବ ପୂରଣ କଲେ ଏବଂ ଭାଗବତର ଦଶମ ସ୍କନ୍ଧରୁ ଉପନିଷଦ-ସାର ରୂପେ ସମ୍ମାନିତ, ଉଦ୍ଧବ ଗୀତା ଅଂଶକୁ ଓଡ଼ିଆରେ ଅନୁବାଦ କରି ଭାଗବତର ସାରକଥାକୁ ଓଡ଼ିଶାରେ ପ୍ରସାର କଲେ ।

ଶ୍ରୀମଦ୍ ଭଗବତ୍ ଗୀତାର ପ୍ରସିଦ୍ଧି ଯୋଗୁ ପରବର୍ତ୍ତୀ ଯୁଗରେ ବଳରାମ ଦାସଙ୍କ ନାମରେ ଭଣିତା ଥିବା ଗୀତାବିକାଶ ଗ୍ରନ୍ଥ ରଚିତ ହୁଏ । ଏହି ଗ୍ରନ୍ଥରେ ଶ୍ରୀମଦ୍ ଭଗବତ୍ ଗୀତାକୁ ଭକ୍ତକବି ବଳରାମ ଦାସଙ୍କର ଜୀବନର ଏକ ଅଭୂତପୂର୍ବ ଘଟଣାଭାବେ ଗ୍ରହଣ କରାଯାଇଛି । ଶ୍ରୀମନ୍ଦିରର ପରଂପରା ଅନୁଯାୟୀ ଏଠାରେ ବିଭିନ୍ନ ସମୟରେ ବିଭିନ୍ନ ଶାସ୍ତ୍ର ଆଲୋଚିତ ହୁଏ । ଏହିପରି ଗୋଟିଏ ଦିନରେ ଗୀତାର ଆଲୋଚନା ହେବାକଥା । ସେଥିପାଇଁ ଶ୍ରୀମନ୍ଦିର ଶୋଧ ହେଲା । କେବଳ ବ୍ରାହ୍ମଣମାନଙ୍କ ବ୍ୟତୀତ ଅନ୍ୟମାନଙ୍କୁ ମନ୍ଦିରର ବେଢ଼ା ମଧ୍ୟରୁ ବହିଷ୍କାର କରିଦିଆଗଲା । ଏହା ଦେଖି ବଳରାମ ବ୍ରାହ୍ମଣ ବେଶରେ ସେଠାରେ ଉପସ୍ଥିତ ହେଲେ ।

ଗୀତାପାଠ ସମାପ୍ତ ହେବାପରେ ବ୍ରାହ୍ମଣ ବଳରାମଙ୍କୁ ଚିହ୍ନିପାରି ତାଙ୍କୁ ବହୁ କଟାକ୍ଷ କଲେ । ପତଙ୍ଗ ସଦୃଶ ଚାରିଆଡ଼ୁ ବେଢ଼ିଯାଇ ତାଙ୍କୁ ପରାଭବ ଦେଲେ । ବଳରାମଙ୍କ ବିରୁଦ୍ଧରେ ସେମାନଙ୍କ ପ୍ରଧାନ ଅଭିଯୋଗ ହେଲା :

ଭଗବାନ ଯାହା ପୂର୍ବେ ଆଦିତ୍ୟକୁ କହି,
ସେ ଗୀତା ଶୁଣିଲୁ ତୁ ଯେ ଶୂଦ୍ରମୁନି ହୋଇ ।
ଶ୍ୱାନହୋଇ ଚରୁଅନ୍ନ ଭୁଂଜିଲୁ ପାମର,
ଠାକୁରଙ୍କୁ ଜଣାଇବା ବେଗେ ଯାକୁ ଧର ।

ବ୍ରାହ୍ମଣମାନେ ଯାଇ ରାଜାଙ୍କ ସମ୍ମୁଖରେ ଗୁହାରୀ କଲେ । ସେମାନଙ୍କ କଥାରେ ପଡ଼ି ବେହେରାମାନେ ବଳରାମଙ୍କୁ ଆଣି ରାଜାଙ୍କ ଛାମୁରେ ପହଞ୍ଚାଇଲେ । ବିଚାର ଆରମ୍ଭ ହେଲା । ବ୍ରାହ୍ମଣମାନଙ୍କ ଅଭିଯୋଗର ଉତ୍ତର ଦେଇ ବଳରାମ ନିର୍ଭୀକଭାବେ ଘୋଷଣା କଲେ:

ମୁହିଂ ଜଣାଇଲି ଦେବ ମହାଗୀତ ଯହୁଂ,
ଭକ୍ତମାନଙ୍କ ଧର୍ମ ଅଛଇ କହି ସେହୁ ।
ବ୍ରହ୍ମକୁ ଚିହ୍ନିଲା ଲୋକ ବ୍ରହ୍ମବିଦ୍ୟା ପାଇ,
ଭକ୍ତଙ୍କ ନିମିତ୍ତେ ପ୍ରଭୁ ଶ୍ରୀମୁଖେ ଅଛନ୍ତି କହି ।
ବ୍ରାହ୍ମଣଙ୍କ ବିଦ୍ୟା ଏହି ଏକା ଯେ ନୁହଇ,
ଭଗତଙ୍କୁ ଅଗୋଚର ଅବା ଅଛି କାହିଁ ।
ଏ ଯେ ବ୍ରହ୍ମବିଦ୍ୟାକୁ ଛନ୍ତି ଗୋପ୍ୟକରି,
କାଲି ଦେବାର୍ଚ୍ଚନ ବେଳେ କହିବ ବାଉରୀ ।

ବଳରାମଙ୍କ ଏହି ଉକ୍ତିରେ ସେତେବେଳେ ସମାଜରେ ବ୍ରାହ୍ମଣମାନଙ୍କର ଆଧିପତ୍ୟ ଓ ଶୂଦ୍ରମାନଙ୍କ ବିଦ୍ରୋହୀ ଭାବନା ପ୍ରକାଶିତ । ବଳରାମ ଅବହେଳିତ ନିର୍ଯାତିତ ଅଗଣିତ ଶୂଦ୍ର ଜାତିର ପ୍ରତିନିଧି ଭାବେ ବ୍ରାହ୍ମଣମାନଙ୍କର ବିରୋଧ କରିଥିଲେ । କିନ୍ତୁ ଗୀତାର ଅର୍ଥ ପ୍ରକାଶ କରିବା ସହଜ କଥା ନୁହେଁ । ଏହା ଏକ ଦୁଷ୍କର କାର୍ଯ୍ୟ । ବଳରାମ ଏକଥା ଭଲଭାବେ ହୃଦୟଙ୍ଗମ କରିଥିଲେ । ସେଥିପାଇଁ ସେ ରାଜାଙ୍କ ସମ୍ମୁଖରେ ଘୋଷଣା କରିଦେବାପରେ ନିଶ୍ଚିତ ହୋଇ ଶୋଇ ପାରି ନଥିଲେ । ନଖାଇ ନପିଇ ସମସ୍ତରାତ୍ରି ଉଜାଗର ହୋଇ ସେ ତାଙ୍କର ଏକମାତ୍ର ସହାୟ ଶ୍ରୀ ଜଗନ୍ନାଥଙ୍କ ନିକଟରେ କରୁଣା ନିବେଦନ କଲେ ।

ଜଗନ୍ନାଥ ଜଗନ୍ନାଥ କରୁଣା ଗୋସାଇଁ<br>
ଜଗନ୍ନାଥ ବିନୁ ମୋର ଆନ ଗତି ନାହିଁ ।

ଭଗବାନ ସବୁଦିନ ଭକ୍ତର ଅଧୀନ । ଭକ୍ତ ବଳରାମଙ୍କ ଆର୍ତ୍ତ ନିବେଦନରେ ତାଙ୍କ ଆସନ ଥରି ଉଠିଲା । ଗଜରାଜ, ଧ୍ରୁବ, ପ୍ରହ୍ଲାଦ, ବିଭୀଷଣ ଓ ଦ୍ରୌପଦୀ ପ୍ରଭୃତି ଭକ୍ତଙ୍କ ବିପଦବେଳେ ଭଗବାନ ସେମାନଙ୍କଟ ସାହାଯ୍ୟ କରିବା ପାଇଁ ଉପସ୍ଥିତ ହେବା ପରି ସେ ଆସି ବଳରାମଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ସେ ବଳରାମଙ୍କୁ ଆଦେଶ ଦେଇ କହିଲେ-

ଭକ୍ତ ନିମନ୍ତେ ଗୀତା ଶ୍ରୀମୁଖେ ଅଛି କହି,<br>
ଯହିଁ ଗୀତା ପ୍ରକାଶ, ତହିଁ ଥାଏ ମୁହିଁ ।<br>
ଭଗବତ ଗୀତା ମୋର ଅତ୍ୟନ୍ତ ଯେ ପ୍ରୀତି,<br>
ଭକ୍ତଲୋକ ଉଦ୍ଧାରନ୍ତେ ମୁଇଁ ଥାଇ କତି ।

ହିନ୍ଦୁମାନଙ୍କର ଗୀତା ହେଉଛି ସର୍ବଶ୍ରେଷ୍ଠ ଧର୍ମଗ୍ରନ୍ଥ । ଏହା ସଂସ୍କୃତରେ ରଚିତ ହୋଇଥିବାରୁ କେବଳ ସଂସ୍କୃତ ଭାଷାଭିଜ୍ଞ ବ୍ରାହ୍ମଣମାନେ ଏହାକୁ ପାଠକରିବାର ସୁବିଧା ପାଇଥିଲେ । ସାଧାରଣ ଲୋକେ ସଂସ୍କୃତ ଜାଣି ନଥିବାରୁ ସେମାନଙ୍କ ସମସ୍ତ ଇଚ୍ଛାସତ୍ତ୍ୱେ ଗୀତା ପାଠକରିବାର ସୌଭାଗ୍ୟ ପାଇନଥିଲେ । ବଳରାମଙ୍କ ପ୍ରଚେଷ୍ଟାରୁ ଗୀତା ଉପରୁ ବ୍ରାହ୍ମଣମାନଙ୍କ ଏକାଧିପତ୍ୟ ଲୋପ ପାଇଗଲା । ବ୍ରାହ୍ମଣମାନଙ୍କ ପରି ସବୁ ଜାତିର ଲୋକେ ଗୀତା ପାଠ କରିବାର ସୌଭାଗ୍ୟ ଲାଭକଲେ । ସେ ଯୁଗ ପାଇଁ ଏହା ଏକ ଅଭୂତପୂର୍ବ କାର୍ଯ୍ୟଥିଲା । ବଳରାମ ଗୀତାକୁ ଅନୁବାଦକରି ସମାଜରେ ପ୍ରଚାର କରିବାପରେ ସାଧାରଣ ଲୋକେ ତାଙ୍କର ଜୟ ଜୟକାର କରିବାରେ ଲାଗିଲେ । ସେ ଯେ ଭଗବାନଙ୍କର ଜଣେ

ଅନନ୍ୟ ଭକ୍ତ ଓ ଭଗବାନଙ୍କର ତାଙ୍କ ପ୍ରତି ଅସୀମ ଦୟା ବିଦ୍ୟମାନ, ଏହା ଓଡ଼ିଶାର ପୁରପଲ୍ଲୀରେ ପ୍ରଚାରିତ ହେଲା । ତାଙ୍କର ଏହି ଅଲୌକିକ ମହିମାକୁ ଲିପିବଦ୍ଧ କରାଗଲା ଗୀତାବକାଶରେ ଏକ ଉପାଖ୍ୟାନ ମାଧ୍ୟମରେ ।

କବି ବଳରାମ ଜଗନ୍ନାଥଙ୍କ ଅନନ୍ୟ ଭକ୍ତଭାବେ ପରିଚିତ । ସେ ସବୁବେଳେ ସବୁ ଗ୍ରନ୍ଥରେ ଜଗନ୍ନାଥଙ୍କ ସହ ନିଜ ଆତ୍ମୀୟତା ପ୍ରକାଶ କରିଛନ୍ତି । ସେ କେତେବେଳେ ତାଙ୍କୁ ସଖାରୂପେ ସମ୍ବୋଧନ କରିଛନ୍ତି ତ କେତେବେଳେ ପିତା ବା ମାତା ରୂପେ । ପ୍ରତ୍ୟେକ ଗ୍ରନ୍ଥ ରଚନା କଲାବେଳେ ସେ ଜଗନ୍ନାଥଙ୍କ ଆଦେଶ ପାଇଁ ଅପେକ୍ଷା କରିଛନ୍ତି । ଜଗମୋହନ ରାମାୟଣ, ଉଦ୍ଧବ ଗୀତା ଏବଂ ଶ୍ରୀମଦ୍ ଭଗବତ୍ ଗୀତା ରଚନା କଲାବେଳେ ସେ ନିଜକୁ କବିରୂପେ ଗ୍ରହଣ ନକରି ଜଗନ୍ନାଥଙ୍କୁ କବିଭାବେ ଘୋଷଣା କରିଛନ୍ତି । କାରଣ ବଳରାମଙ୍କ ବିଶ୍ୱାସ ଥିଲା ଯେ, ଜଗନ୍ନାଥଙ୍କ କୃପାବିନା ସଂସାରରେ କୌଣସି କାର୍ଯ୍ୟ କରିବା ସମ୍ଭବ ନୁହେଁ । କବିଙ୍କର ଏହି ଭାବନା ଜଗମୋହନ ରାମାୟଣ ପରି ଶ୍ରୀମଦ୍ ଭଗବତ୍ ଗୀତାରେ ମଧ୍ୟ ପ୍ରକାଶିତ । ଏହାର କବି ହେଉଛନ୍ତି ନିଜେ ଜଗନ୍ନାଥ ଓ ଲେଖନକାର ହେଉଛନ୍ତି ବଳରାମ ।

ନୀଳଗିରି ଜଗନ୍ନାଥ ଗୋସାଇଁ,
ତାହାଙ୍କ ସେବକ ସର୍ବଦା ମୁହିଁ ।
ସେ ହୃଦେ ଯାହା ଆଜ୍ଞାଦେଲେ ମୋତେ,
ଲେଖନ ଧରି ମୁଁ ଲେଖିଲି ପତ୍ରେ ।

ନୀଳାଚଳ ପତି ଜଗନ୍ନାଥଙ୍କ ଅନନ୍ୟ ଭକ୍ତ ବଳରାମ ସଂସ୍କୃତ ଗୀତାକୁ ଓଡ଼ିଆରେ ଅନୁବାଦ କରିଥିବାରୁ ଏହା ଅତ୍ୟନ୍ତ ଲୋକପ୍ରିୟ ହୋଇଥିଲା । ଗୀତାର ପ୍ରସିଦ୍ଧି ଜଗନ୍ନାଥଙ୍କ ମାହାତ୍ମ୍ୟ ଓ ଭକ୍ତ ବଳରାମଙ୍କର ଅଲୌକିକତା ସମ୍ମିଳିତ ହୋଇ ବଳରାମଙ୍କ ଗୀତାକୁ ଓଡ଼ିଆ ସମାଜରେ ଏକ ମହାନ ଗ୍ରନ୍ଥରୂପେ ପ୍ରତିଷ୍ଠିତ କଲା ।

ଶ୍ରୀମଦ୍ ଭଗବତ୍ ଗୀତାର ରଚନା ବଳରାମଙ୍କ ପ୍ରକୃଷ୍ଟ ସଂସ୍କୃତ ଜ୍ଞାନର ପରିଚାୟକ । ସେ ଅନୁବାଦ କଲାବେଳେ ସଂସ୍କୃତ ଶବ୍ଦାବଳୀ ସ୍ଥାନରେ ଓଡ଼ିଆ ସମାଜରେ ପ୍ରଚଳିତ ଶବ୍ଦାବଳୀକୁ ପ୍ରୟୋଗ କରି ଅନୁବାଦର ଏକ ସ୍ୱତନ୍ତ୍ର ଶୈଳୀ ସୃଷ୍ଟି କରିଥିଲେ । ନିମ୍ନରେ ପ୍ରଦତ୍ତ କେତୋଟି ଉଦାହରଣରୁ ଏହା ସ୍ପଷ୍ଟ ହୋଇଥାଏ ।

୧ । ସଂସ୍କୃତ "ଅଶାସ୍ତ୍ର ବିହିତଂ ଘୋରଂ ତପନ୍ତେ ଯେ ତପୋଜନାଃ,
ଦମ୍ଭାହଂକାର ସଂଯୁକ୍ତାଃ କାମଭାଗବଳାନ୍ୱିତାଃ ।" (୧୭/୫)

ଓଡ଼ିଆ ଯେଉଁ ଲୋକ ଦମ୍ଭ ଆରମ୍ଭେଣ କାମ ଭାଗଙ୍କର ବଳେ,
ଶାସ୍ତ୍ର ବିନୁ ହୋଇଲା କର୍ମ ନକରନ୍ତି ସବୁକାଳେ । (୧୭/୭)

୨ । ସଂ "ଆୟୁ ସତ୍ତ୍ୱବଳା ରୋଗ୍ୟ ସୁଖ ପ୍ରୀତି ବିବର୍ଦ୍ଧନାଃ,
ରସ୍ୟାଃ ସ୍ନିଗ୍ଧା ସ୍ଥିରା ହୃଦ୍ୟା ଆହାରାଃ ସାତ୍ତ୍ୱିକ ପ୍ରିୟା ।"

ଓ "ଆଉଣ ଉଚ୍ଛାହା ବଳ କୋମଳ ଆରୋଗ୍ୟ ସୁଖରେ ପ୍ରୀତି,
ରସବନ୍ତ ଯେଉଁ ଆହାରମାନ ତାହା ସାତ୍ତ୍ୱିକ୍ୟେ କରନ୍ତି ।"
(୧୭/୧୧)

୩। ସଂ "ଯାତଯାମଂ ଗତରସଂ ପୂତି ପର୍ଯ୍ୟୁଷିତଂ ଚଯତ୍,
ଉଚ୍ଛିଷ୍ଟମପିଚାମେଧ୍ୟଂ ଭୋଜନଂତାମସପ୍ରିୟମ୍ ।" (୧୭/୧୦)

ଓ "ପୁରୁଂ ବାସି ସ୍ୱାଦ ଗଲା ପଦାର୍ଥ ଅପବିତ୍ର ଉଚ୍ଛିଷ୍ଟ,
ଯେମନ୍ତ ଆହାର କରେ ଯେଉଁ ନର ତାମସ ବୋଲିତା ନଷ୍ଟ ।"
(୧୭/୧୩)

୪ । ସଂ "ଦାତବ୍ୟ ମିତିଦ୍ଦାନଂ ବ୍ୟୟତେଽନୁପକାରିଣେ
ଦେଖେ କାଳେ ଚ ପାତ୍ରେ ଚ ତଦ୍ଦାନଂ ସାତ୍ତ୍ୱିକ ସ୍ମୃତମ୍ ।"
(୧୭/୨୦)

ଓ "ଅଗ ଉପଗାରି ଲୋକ ଭଲ ଦେଖ କାଳ ପାତ୍ର ବିଚାରିବା,
ତାହାର ଦାନ ସେ ସାତ୍ତ୍ୱିକ୍ୟ ବୋଲି ଶୁଦ୍ଧଚିତ୍ତେଣ ତା ଦେବ ।"
(୧୭/୨୬)

୫ । ସଂ "ଯତ୍ତୁ ପ୍ରତ୍ୟୁପକାରାର୍ଥଂ ଫଳମୁଦ୍ଦିଶ୍ୟକାପୁନଃ
ଦୀୟତେ ଚ ପରିକ୍ଲିଷ୍ଟ ତଦ୍ଦାନଂ ରାଜସଂ ସ୍ମୃତମ୍ ।"

୦ "ଉପୁରି ପାଇବାକୁ ଦାନ ଦେଉ ଫଳ ପାଇବାକୁ ଆଶ,
ନ ଦେଲେ ନୁହଇ ବୋଲି ଭାଳି ଦେଉ ଯେମନ୍ତ ଦାନ ରାଜସ ।"
(୧୭/୨୭)

ଶ୍ରୀମଦ୍ ଭଗବତ୍ ଗୀତା ଅନୁବାଦ କଲାବେଳେ ବଳରାମ ଯେ କେବଳ ଏହାର ଆକ୍ଷରିକ ଅର୍ଥ ପ୍ରଦାନ କରିଛନ୍ତି ତା' ନୁହେଁ, ସେ ଏହାକୁ ସଂସ୍କୃତ ଭାଷାର ବନ୍ଧନରୁ ସଂପୂର୍ଣ୍ଣ ମୁକ୍ତକରି ଓଡ଼ିଆ ଭାଷାର ସୌନ୍ଦର୍ଯ୍ୟରେ ବିମଣ୍ଡିତ କରିଛନ୍ତି । ଏହାକୁ ପାଠକଲେ ଏଥିରେ ସଂସ୍କୃତ ଭାଷାର କୌଣସି ସ୍ପର୍ଶ ମିଳେନାହିଁ । ଏହାହିଁ ଥିଲା ବଳରାମଙ୍କର ଓଡ଼ିଆ ଜାତିପ୍ରତି ମହନୀୟ ଦାନ ।

ଖାଣ୍ଟି ଓଡ଼ିଆରେ ପ୍ରକାଶ କଲାବେଳେ ବଳରାମଙ୍କ ନିଜସ୍ୱ ଚିନ୍ତାଧାରା ଓ ଦର୍ଶନ ଏହାର ବହୁ ସ୍ଥାନରେ ଅନୁପ୍ରବେଶ କରି ଏହାକୁ ଏକ ନୂତନ କଳେବର ପ୍ରଦାନ କରିଛି । ଶ୍ରୀମଦ୍ ଭଗବତ୍ ଗୀତା ମହାଭାରତର ଏକ କ୍ଷୁଦ୍ର ଅଂଶ । ଏକଥା ସମସ୍ତଙ୍କୁ ଜଣାଥିଲେ ହେଁ ଓଡ଼ିଆ ଅନୁବାଦର ଆରମ୍ଭରେ ଯୁଦ୍ଧର ପ୍ରଥମ ଦିନର ଉଲ୍ଲେଖ, କୁରୁ ଓ ପାଣ୍ଡବମାନଙ୍କ ଯୁଦ୍ଧ ପ୍ରସ୍ତୁତି ଓ ଯୁଦ୍ଧନୀତି ପ୍ରଭୃତିର ଉଲ୍ଲେଖକରି ଏବଂ ଉପସଂହାରରେ ଯୁଦ୍ଧର ପରିଣତିର ସୂଚନା ଦେଇ ସେ ଏହାକୁ ଏକ ପୂର୍ଣ୍ଣରୂପ ପ୍ରଦାନ କରିଛନ୍ତି । ବଳରାମଙ୍କର ଏହି କାର୍ଯ୍ୟ ଦ୍ୱାରା ତାଙ୍କ ରଚିତ ଶ୍ରୀମଦ୍ ଭଗବତ୍ ଗୀତା ମହାଭାରତର ଅଂଶ ନହୋଇ ଏକ ସ୍ୱତନ୍ତ୍ର ଗ୍ରନ୍ଥରେ ପରିଣତ ହୋଇଛି ।

ପ୍ରତ୍ୟେକ ଅଧ୍ୟାୟ ଶେଷରେ ବଳରାମ ତାଙ୍କ ଇଷ୍ଟ ଦେବତା ଜଗନ୍ନାଥଙ୍କୁ ସ୍ମରଣ କରିଛନ୍ତି । ତାଙ୍କ ରଚିତ ପ୍ରତ୍ୟେକ ଗ୍ରନ୍ଥରେ ଏହା ଏକ ବୈଶିଷ୍ଟ୍ୟ । ନୀଳାଚଳ ପତି ଜଗନ୍ନାଥ ଓ ଭକ୍ତକବି ବଳରାମଙ୍କ ମଧ୍ୟରେ ଥିବା ଆତ୍ମୀୟତା ଗ୍ରନ୍ଥ ମଧ୍ୟରେ ବାରମ୍ବାର ପ୍ରକାଶ ପାଇବା ଫଳରେ ସଂସ୍କୃତ ଗୀତା ଅପେକ୍ଷା ଏଥିରେ ଭକ୍ତର ଭାବନାରାଜି ବିଶେଷ ଭାବେ ଆତ୍ମପ୍ରକାଶ କରିଛି । ଜଗନ୍ନାଥ କେବଳ ଅଧ୍ୟାୟ ଶେଷରେ ନାହାନ୍ତି, ଭଗବତ୍ ସତ୍ତାରେ ବର୍ଣ୍ଣନା କଲାବେଳେ ଜଗନ୍ନାଥଙ୍କ ଐତିହ୍ୟ ଏଥିରେ ମିଶି ଯାଇଛି । ରେଖରୂପ ନଥିବା ଓ ଜଗତକୁ ପରିବ୍ୟାପ୍ତ କରିଥିବା ନିରାକାର ବ୍ରହ୍ମଙ୍କ ବର୍ଣନା ସାଙ୍ଗକୁ ଦାସ ଦାରିବାକୁ ଭୁଜ ଟେକିଛନ୍ତି । ନିରନ୍ତର ମନ୍ଦହାସକୁ ଯୋଡ଼ିବା ବେଳେ ତାଙ୍କ କଳ୍ପନା ଜଗନ୍ନାଥ ଭକ୍ତିଦ୍ୱାରା ଅନୁପ୍ରାଣିତ ହୋଇଥିବା ଜଣାଯାଏ । ସେହିପରି ଭକ୍ତିଭାବନା ବର୍ଣ୍ଣନା କରିବାବେଳେ ତାଙ୍କର

ନିଜର ଭକ୍ତଜୀବନ ସେଥିରେ ପ୍ରବେଶ କରିଯାଇଛି । ଗୀତାରେ ଜ୍ଞାନ, ଯୋଗ, କର୍ମ ଓ ଭକ୍ତିମାର୍ଗର ସବିଶେଷ ଆଲୋଚନା କରାଯାଇ ଥିଲେ ହେଁ ଭକ୍ତିର ସବିଶେଷ ଆଲୋଚନା କରାଯାଇଛି । ବଳରାମ ମଧ୍ୟ ଭକ୍ତିମାର୍ଗର ପଥିକ ଥିଲେ । ସେଥିପାଇଁ ତାଙ୍କ ଗ୍ରନ୍ଥରେ ଭକ୍ତିଧର୍ମ ପାଇଁ ପଦେଦିପଦ ଅଧିକ ଯୋଡ଼ିବା ସ୍ୱାଭାବିକ ଥିଲା । ସଂସ୍କୃତ ଗୀତା ପରି ସେ କହିଛନ୍ତି :

ଏହି ସଂସାର ଅସୁଖ ଅନିତ୍ୟ,
ଏଥେ ଥାଇ ମୋତେ ହୁଅ ଭଗତ ।
ମୋହ ତହିଂ ମନ ଦେଇ ଭଜିବୁ
ମୋତେ ଭଗତି କରିଣ ମଜିବୁ ।
ମୋତେ ହେଂ ସେ ନମସ୍କାର କରିବୁ,
ଏହ୍ନେ ତତ୍ତ୍ୱ ପରେ ଭବୁ ତରିବୁ ।

ସଂସ୍କୃତ ଗୀତାର ଏହି ଅମରବାଣୀ ସହ ସେ ନିଜର କଣ୍ଠସ୍ୱର ମିଳାଇ ଆହୁରି ଅଧିକ ଦୁଇପଦ ଯୋଗ କରିଛନ୍ତି । ଭଗବାନ ଯେ କେବଳ ତାଙ୍କ ଭକ୍ତମାନଙ୍କୁ ସବୁ ଧର୍ମ ପରିତ୍ୟାଗକରି ତାଙ୍କଠାରେ ଶରଣ ପଶିବାକୁ ଉପଦେଶ ଦେଇଛନ୍ତି, ତା ନୁହେଁ, ସେ ସବୁବେଳେ ଭକ୍ତକୁ ରକ୍ଷାକରିବା ପାଇଁ ତତ୍ପର ହୋଇଛନ୍ତି । ସେଥିପାଇଁ ବଳରାମ କହିଛନ୍ତି :

ସହସ୍ରେ ଭୁଜରେ ଆୟୁଧ ଧରି,
ମୋହ ଭକ୍ତକୁ ମୁଁ ଥାଇ ଉହାଡ଼ି ।
ଭକ୍ତ ଯେଣେ ଯିବ ମୁଁ ତେଣେ ଯାଇ,
ଆଗ ପଛ ବୋଲି ମଣାଇ ଥାଇ ।

ଭକ୍ତକୁ କେବଳ ଭକ୍ତ କହିବାରେ ବଳରାମ ସନ୍ତୁଷ୍ଟ ନୁହନ୍ତି । ତାଙ୍କ ମତରେ ଭକ୍ତ ହେଉଛି ଭଗବାନଙ୍କ ପ୍ରକୃତ ଦାସ । ଷୋଡ଼ଶ ଶତାବ୍ଦୀରେ ଭକ୍ତମାନଙ୍କୁ ସେଥିପାଇଁ ଦାସ ଆଖ୍ୟା ଗ୍ରହଣ କରିବାକୁ ହେଉଥିଲା । ଭକ୍ତ ବଳରାମ ସେଥିପାଇଁ ଭକ୍ତମାନଙ୍କୁ ସେବକ ଭାବେ ଓ ଦାସ ଆଖ୍ୟାକୁ ଭକ୍ତର ପର୍ଯ୍ୟାୟବାଚୀ ଶବ୍ଦରୂପେ ବାରମ୍ବାର ବ୍ୟବହାର କରିଛନ୍ତି ।

ନିମ୍ନୋକ୍ତ ଉଦାହରଣରୁ ଏହା ସ୍ପଷ୍ଟ ହୋଇଯାଏ :

୧) ଭୟେ ଉଦବେଗ ଯେ ହରଷ ଅମରାଷ
ଯେ ଚାରିକଥା ନଥିଲେ ମୋହର ଦାସ ।

୨) ଦାସ ତାରିବାକୁ ଯୁଗ ଟେକିଛନ୍ତି ନିରନ୍ତରେ ମନ୍ଦହାସ

ଏହିପରି ସମାନ ଅର୍ଥଦ୍ୟୋତକ ପଂକ୍ତି ସବୁ ଜଗମୋହନ ରାମାୟଣରେ ମଧ୍ୟ ଦେଖିବାକୁ ମିଳିଥାଏ । ଜଗନ୍ନାଥ ଥିଲେ କବି ବଳରାମଙ୍କ ଆରାଧ୍ୟ ଦେବତା । ତାଙ୍କରି ଆଜ୍ଞାରେ ଅନୁବାଦ ଆରମ୍ଭ କରି ଗ୍ରନ୍ଥ ସମାପ୍ତ କଲାପରେ ସେ ତାଙ୍କରି ଧନକୁ ତାଙ୍କରି ଠାରେ ହିଁ ସମର୍ପଣ କରିଛନ୍ତି । ଜଗତ ହିଁ ଶ୍ରୀହରି, ଶ୍ରୀହରି ହିଁ ଜଗତ । ଏହି ନ୍ୟାୟରେ କବି ସବୁ ସ୍ଥାନରେ ଜଗନ୍ନାଥଙ୍କୁ ଦେଖିଛନ୍ତି ଓ ତାଙ୍କରି କୃପା ବଳରେ ସେ ବିଷ୍ଣୁଭକ୍ତ ଭାବେ ପ୍ରସିଦ୍ଧିଲାଭ କରିଛନ୍ତି । ସେ କହିଛନ୍ତି :

ଜଗନ୍ନାଥ ଠାକୁର ସୁଦୟା ମତେ କଲେ,
ବିଷ୍ଣୁଭକ୍ତ ବଳରାମ ଲୋକେ ପ୍ରତେ ଗଲେ ।

ଗୀତାର ଅନୁବାଦକରି ଓଡ଼ିଆ ଭାଷା ଓ ସାହିତ୍ୟକୁ ସେ ଯେ ସମୃଦ୍ଧ କରିଥିଲେ, ତା' ନୁହେଁ; ସଂସ୍କୃତ ଅନଭିଜ୍ଞ ଓଡ଼ିଆ ପାଠକ ନିକଟରେ ହିନ୍ଦୁଧର୍ମର ମହାନ ଗ୍ରନ୍ଥ ଶ୍ରୀମଦ୍ ଭଗବତ୍ ଗୀତାକୁ ସେ ସାଧାରଣ ଓଡ଼ିଆ ପାଠକ ନିକଟରେ ଉପସ୍ଥାପିତ କରି ପାରିଥିଲେ । ସେ ଏହି ଅନୁବାଦ ଦ୍ୱାରା ନିଜ ଭକ୍ତଜୀବନକୁ ମଧ୍ୟ ସାର୍ଥକ କରିପାରିଥିଲେ ।

ଶ୍ରୀମଦ୍ ଭଗବତ୍ ଗୀତାର ଅନୁବାଦରେ ଶୈଳୀଗତ କେତେକ ବୈଶିଷ୍ଟ୍ୟ ପରିଦୃଷ୍ଟ ହୁଏ । ଏହାର ପ୍ରତ୍ୟେକ ଅଧ୍ୟାୟ ଦୁଇଟି ବିଭାଗରେ ବିଭକ୍ତ । ପାଢ଼ିବନ୍ଧ ଓ ଗୀତବନ୍ଧ । ପ୍ରତ୍ୟେକ ଗୀତବନ୍ଧ ପାଇଁ ସେ ସ୍ୱତନ୍ତ୍ର ବାଣୀର ପ୍ରୟୋଗ କରିଛନ୍ତି । ଗୀତାର ଅଠରଟି ଅଧ୍ୟାୟରେ ସେ ଛଅଟି ବାଣୀର ପ୍ରୟୋଗ କରିଛନ୍ତି :

୧) ଭାରତ ବୋଲିବାଣୀ ।
୨) ଭାଷ୍ଲେକ ବାଣୀ ।
୩) ଜଳକ୍ରୀଡ଼ା ବୋଲିବାଣୀ ।
୪) ତଣ୍ଡେକ ରାଗ ବା ବାଣୀ ।
୫) ରୋଢ଼ା ବାଣୀ ।
୬) କଳସା ବାଣୀ ।

ଏହି ଛଅଟି ବାଣୀକୁ କ୍ରମାନ୍ୱୟରେ ସେ ତିନିଥର ବ୍ୟବହାର କରିଛନ୍ତି । ଏହି ସବୁ ବାଣୀ ଏହି ନାମଧେୟ କୌଣସି ପ୍ରାଚୀନ ଗ୍ରନ୍ଥକୁ ବୁଝାଇଥାଏ । ଏଥିରୁ କେବଳ ବସ୍ତାଦାସଙ୍କ ରଚିତ ଚଉତିଶା ଆବିଷ୍କୃତ ହୋଇ ପାରିଛି । ଓଡ଼ିଆ ଗବେଷଣା ପରିଷଦଦ୍ୱାରା ୧୯୮୧ରେ ପ୍ରକାଶିତ କବି ବଳରାମ ଦାସଙ୍କ ଶ୍ରୀରୋଢ଼ା ବା ରୁକ୍ମିଣୀ ବିବାହ ଲେଖକ ବଳରାମଙ୍କ ଉଲ୍ଲିଖିତ ରୋଢ଼ା ଗ୍ରନ୍ଥ ନୁହେଁ । ଏଥିରେ ତେର ଓ ଚଉଦ ଅକ୍ଷର ବିଶିଷ୍ଟ ଛନ୍ଦ ବ୍ୟବହାର କରାଯାଇଥିବାବେଳେ ରୋଢ଼ା ବାଣୀରେ ଅଠର ଅକ୍ଷର ବିଶିଷ୍ଟ ଛନ୍ଦ ବ୍ୟବହୃତ ହୋଇଛି । ଏଥିରୁ ଏହା ଅନୁମିତ ହୁଏ ଯେ ବଳରାମଙ୍କ ପ୍ରଯୁକ୍ତ ରୋଢ଼ାବାଣୀ ରୋଢ଼ା ଶୀର୍ଷକ ଅନ୍ୟ ଏକ ସ୍ୱତନ୍ତ୍ର ରଚନା । ତାଙ୍କ ଉଲ୍ଲିଖିତ ଏହି ପାଞ୍ଚଟି ଗ୍ରନ୍ଥ ଅଦ୍ୟାବଧି ଅନାବିଷ୍କୃତ । ଏ ସବୁର ଆବିଷ୍କାର ହେଲେ ଓଡ଼ିଆ ସାହିତ୍ୟର ପାଞ୍ଚଟି ଲୁପ୍ତ ରତ୍ନର ଉଦ୍ଧାର ହୋଇପାରିବ ବୋଲି ଆଶା ।

## ବ୍ରହ୍ମାଣ୍ଡ ଭୂଗୋଳ

ଓଡ଼ିଆ ସାହିତ୍ୟରେ ବଳରାମ ଦାସଙ୍କ ଭଣିତା ଥିବା ଦୁଇଟି ସ୍ୱତନ୍ତ୍ର ବ୍ରହ୍ମାଣ୍ଡ ଭୂଗୋଳ ଦେଖିବାକୁ ମିଳେ । ପ୍ରଥମ ଗ୍ରନ୍ଥଟି ବହୁ ପୂର୍ବରୁ ପ୍ରକାଶିତ । ସେଥିରେ ୮୪ଟି ଅଧ୍ୟାୟ ଦେଖିବାକୁ ମିଳେ । ଦ୍ୱିତୀୟ ଗ୍ରନ୍ଥଟି ଡ. କୃଷ୍ଣଚରଣ ସାହୁଙ୍କ ଦ୍ୱାରା ସମ୍ପାଦିତ ଓ ପ୍ରକାଶିତ । ଏଥିରେ ୨୫ଟି ଅଧ୍ୟାୟ । ଉଭୟ ଗ୍ରନ୍ଥରେ ଶ୍ରୀକୃଷ୍ଣ ବକ୍ତା ଓ ଅର୍ଜୁନ ଶ୍ରୋତା । ଭାଗବତର ନବାକ୍ଷରୀ ବୃତ୍ତରେ ଦୁଇଟିଯାକ ଗ୍ରନ୍ଥ ରଚିତ । ଉଭୟ ଗ୍ରନ୍ଥରେ ଜଗନ୍ନାଥ ଦାସଙ୍କ ରଚିତ ଏକାଦଶ ସ୍କନ୍ଧରୁ କେତେକ ପଦ ଗୃହୀତ ହୋଇ ପିଣ୍ଡବ୍ରହ୍ମାଣ୍ଡ ଯୋଗଦୃଷ୍ଟିରୁ ଏହାର ବ୍ୟାଖ୍ୟା କରାଯାଇଛି । ଏହା ସତ୍ତ୍ୱେ ଉଭୟ ଗ୍ରନ୍ଥର ଭାଷା ଓ ବିଶ୍ଳେଷଣ ପଦ୍ଧତିରେ ବହୁ ପାର୍ଥକ୍ୟ ପରିଦୃଷ୍ଟ ହୁଏ । ପ୍ରଥମ ସ୍ଥାନରେ ବଳରାମ ଦାସଙ୍କ ଭଣିତା ଥିଲେ ମଧ୍ୟ ପିତା ସୋମନାଥଙ୍କ ଉଲ୍ଲେଖ ମିଳେନାହିଁ । ଦ୍ୱିତୀୟ ଗ୍ରନ୍ଥରେ କବି ନିଜକୁ ସୋମନାଥ ସୁତ ଭାବେ ଉଲ୍ଲେଖ କରିଛନ୍ତି । ଏହି ଗ୍ରନ୍ଥର ରଚୟିତା ସେ ଦୁଇଜଣ ସ୍ୱତନ୍ତ୍ର କବି ଏଥିରୁ ପ୍ରତିପାଦିତ ହୋଇଥାଏ ।

କେତେକ ଆଲୋଚକଙ୍କ ମତରେ ବଳରାମ ଦାସ ଭାଷା-ବିଶ୍ଳେଷଣ ଶୈଳୀ ଓ ପିତାଙ୍କ ନାମ ଉଲ୍ଲେଖ କରିଥିବା ହେତୁ ଦ୍ୱିତୀୟ ବ୍ରହ୍ମାଣ୍ଡଭୂଗୋଳହିଁ ଜଗମୋହନ ରାମାୟଣ ରଚୟିତା ବଳରାମ ଦାସଙ୍କ ରଚନା ରୂପେ ଗ୍ରହଣ କରାଯାଇପାରେ । ଏଥିରେ କବି ଦେହବିଧିତତ୍ତ୍ୱର ବିଭିନ୍ନ ତତ୍ତ୍ୱକୁ ୨୫ଟି ଅଧ୍ୟାୟରେ ପ୍ରକାଶ କରିଛନ୍ତି । ପ୍ରତ୍ୟେକ ବ୍ୟାଖ୍ୟାରୁ

କବିଙ୍କ ପାଣ୍ଡିତ୍ୟ ଓ ବହୁଶାସ୍ତ୍ରଦର୍ଶିତାର ପରିଚୟ ମିଳିଥାଏ । ସେ ବ୍ୟାଖ୍ୟା କଲାବେଳେ ଉପନିଷଦ, ଭାଗବତ ଓ ବିଭିନ୍ନ ପୁରାଣରୁ କଥାସବୁକୁ ସଂଗ୍ରହ କରି ଭାଗବତ ପଦର ବ୍ୟାଖ୍ୟା କରିଛନ୍ତି ।

ଜଗନ୍ନାଥ ଦାସ ବଳରାମଙ୍କ ଶିଷ୍ୟଥିବା ଦିବାକର ଦାସଙ୍କ ଜଗନ୍ନାଥ ଚରିତାମୃତରୁ ଜଣାଯାଇଥାଏ । ତେଣୁ ଜଣେ ଗୁରୁଶିଷ୍ୟଙ୍କ ରଚିତ ଭାଗବତର ପଦକୁ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ଅନୁଯାୟୀ ବ୍ୟାଖ୍ୟାକରିବା କେତେକ ଆଲୋଚକଙ୍କ ମତରେ ଏକ ଅସମ୍ଭବ କଥା । ଭାଗବତ ଏକ ଭକ୍ତିରସାତ୍ମକ ଗ୍ରନ୍ଥ ଏବଂ ବ୍ରହ୍ମାଣ୍ଡଭୂଗୋଳ ଏକ ବ୍ରହ୍ମଜ୍ଞାନମୂଳକ ରଚନା । ଭକ୍ତି ଜ୍ଞାନମାର୍ଗ ସାଧକଙ୍କ ମତରେ ଏଥିରେ ବହୁ ପାର୍ଥକ୍ୟ ପରିଦୃଷ୍ଟହୁଏ । ତେଣୁ କେତେକ ଆଲୋଚକ ବ୍ରହ୍ମାଣ୍ଡଭୂଗୋଳକୁ ଜଗମୋହନ ରାମାୟଣ ରଚୟିତା ବଳରାମ ଦାସଙ୍କ ରଚିତ ଗ୍ରନ୍ଥ ରୂପେ ଗ୍ରହଣ କରିବାକୁ କୁଣ୍ଠା ପ୍ରକାଶ କରିଛନ୍ତି, କିନ୍ତୁ ଏହା ଯଥାର୍ଥ ନୁହେଁ । ବଳରାମ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ଦୃଷ୍ଟିରୁ ଭାଗବତର ଯେଉଁ ସବୁ ପଦର ବ୍ୟାଖ୍ୟା କରିଛନ୍ତି, ସେ ସବୁ ଏକାଦଶ ସ୍କନ୍ଧର ପଦ । ଏକାଦଶ ସ୍କନ୍ଧରେ ଜ୍ଞାନ, କର୍ମ ଓ ଭକ୍ତିଯୋଗର ବିଚାର କରାଯାଇ ଭକ୍ତିକୁ ଶ୍ରେଷ୍ଠଯୋଗ ବୋଲି କୁହାଯାଇଛି । ବ୍ରହ୍ମାଣ୍ଡଭୂଗୋଳରେ କବି ଦେହବିଧିତତ୍ତ୍ୱକୁ ମୁଖ୍ୟଭାବେ ଆଲୋଚନା କରିଥିଲେ ମଧ୍ୟ ଭକ୍ତିତତ୍ତ୍ୱକୁ ଶ୍ରେଷ୍ଠ ବୋଲି କହିଛନ୍ତି । ବଳରାମ ଓ ଜଗନ୍ନାଥ ବୟସରେ ବଡ଼ ଓ ସାନ ହୋଇଥିଲେ ହେଁ ଏବଂ ସଂପର୍କରେ ଗୁରୁଶିଷ୍ୟ ହେଲେ ବି ଭକ୍ତିତତ୍ତ୍ୱକୁ ଭିନ୍ନ ଭିନ୍ନ ଦୃଷ୍ଟିରୁ ଆଲୋଚନା କରିବାରେ ବାଧା ନଥିଲା । ଏସବୁ ଦୃଷ୍ଟିରୁ ଦ୍ୱିତୀୟ ବ୍ରହ୍ମାଣ୍ଡ ଭୂଗୋଳକୁ ହିଁ ବଳରାମ ଦାସଙ୍କ ପ୍ରାମାଣିକ ରଚନା ରୂପେ ଗ୍ରହଣ କରାଯାଇପାରେ ।

## ଲକ୍ଷ୍ମୀ ପୁରାଣ

ଓଡ଼ିଶାର ଲୋକପ୍ରିୟ ରଚନାଗୁଡ଼ିକ ମଧ୍ୟରେ ଲକ୍ଷ୍ମୀପୁରାଣ ଅନ୍ୟତମ । ଏହି ଗ୍ରନ୍ଥର ଅନ୍ୟନାମ ହେଉଛି ଧାନମାଣିକା ବା ଗୁରୁବାର ବୋଲି । ଏଥିରେ ଲକ୍ଷ୍ମୀଙ୍କ ମାହାତ୍ମ୍ୟ ବର୍ଣ୍ଣନା କରାଯାଇଛି । ଏହା ସହିତ କବି ଜଗନ୍ନାଥ ମନ୍ଦିରରେ ଜଗନ୍ନାଥଙ୍କ ମହାପ୍ରସାଦର ଆଦର୍ଶ ପ୍ରଚାର କରିଛନ୍ତି । ମହାପ୍ରସାଦ ସେବାରେ ବ୍ରାହ୍ମଣ ଓ ଚଣ୍ଡାଳ ମଧ୍ୟରେ ପାର୍ଥକ୍ୟ ନଥାଏ । ଏହି କଥା ପ୍ରଚାର କରିବା ସଙ୍ଗେ ସଙ୍ଗେ ଏଥିରୁ ଅନ୍ୟଏକ ଐତିହାସିକ ତଥ୍ୟ ମିଳିଥାଏ । ପୁରୀରେ ଦୁଇଟି ଲକ୍ଷ୍ମୀ ମନ୍ଦିର ବିରାଜିତ । ଗୋଟିଏ ଜଗନ୍ନାଥ ମନ୍ଦିର ବେଢ଼ା ଭିତରେ, ଆଉ ଗୋଟିଏ ସମୁଦ୍ର କୂଳରେ । ଏହି ଦୁଇ ଲକ୍ଷ୍ମୀ ମନ୍ଦିରକୁ ଦେଖି କେତେକ ଐତିହାସିକ ମତ ପ୍ରଦାନ କରିନ୍ତି ଯେ, ପ୍ରଥମେ ଲକ୍ଷ୍ମୀ ଜଗନ୍ନାଥ ମନ୍ଦିରର ବାହାରେହିଁ

ପୂଜିତା ହେଉଥିଲେ । ରାମାନୁଜ ସଂପ୍ରଦାୟ ପ୍ରଭାବରେ ସେ ଆସିଲେ ବେଢ଼ା ଭିତରକୁ । ଇତିହାସର ଏହି ଗୁରୁତ୍ୱପୂର୍ଣ୍ଣ ଘଟଣା ପରେ କିମ୍ବଦନ୍ତୀରେ ପରିଣତ ହୋଇଗଲା ଓ ବଳରାମ ଏହାକୁ କାବ୍ୟ ରୂପ ଦେଲେ 'ଲକ୍ଷ୍ମୀ ପୁରାଣ'ରେ ।

ରାମାନୁଜପନ୍ଥୀ ବୈଷ୍ଣବମାନେ ଜାତିଭେଦ ପ୍ରଥାକୁ ଅତି କଠୋର ଭାବେ ପାଳନ କରୁଥିଲେ । ମନ୍ଦିର ଭିତରକୁ ଲକ୍ଷ୍ମୀଙ୍କୁ ଆଣିବାପରେ ସେମାନେ ସେହି ଜାତିଭେଦ ପ୍ରଥାକୁ ମନ୍ଦିରର ରୀତିନୀତିରେ ଯୋଗକରିବା ପାଇଁ ଚେଷ୍ଟା କରିଥିବେ ଓ ସେଥିପାଇଁ ସେତେବେଳେ ବିଭିନ୍ନ ଦିଗରୁ ଆପତ୍ତି ମଧ୍ୟ ହୋଇଥିବ । ସେହିସବୁ ପୂର୍ବ ପରମ୍ପରାକୁ ଲକ୍ଷ୍ୟରଖି ଲକ୍ଷ୍ମୀ ପୁରାଣରେ ଲକ୍ଷ୍ମୀଙ୍କ ଆଗରେ ଜାତିଭେଦ ପ୍ରଥା ବିରୁଦ୍ଧରେ ଏକ ଘୋଷଣା ପ୍ରକାଶିତ ହେଲା । ସେତେବେଳେ ଲକ୍ଷ୍ମୀ ସ୍ପଷ୍ଟ ସର୍ତ୍ତରଖି କହିଲେ-

ଏତେ କହି ଗୋବିନ୍ଦ ଧଇଲେ ଲକ୍ଷ୍ମୀ ହସ୍ତ,<br>
ଜଗତମାତା ବୋଇଲେ ତୁମ୍ଭେ କର ସତ୍ୟ ।<br>
ଚଣ୍ଡାଳ ବ୍ରାହ୍ମଣ ଯାଏ ଖୁଆଖୋଇ ହେବେ,<br>
ସମସ୍ତ ଖାଇଣ ହସ୍ତ ଜଳେ ନଧୋଇବେ ।<br>
ହାଡ଼ିର ହସ୍ତୁ ବ୍ରାହ୍ମଣ ଛଡ଼ାଇ ଖାଇବେ,<br>
ବ୍ରାହ୍ମଣ ଖାଇ ହସ୍ତକୁ ମୁଣ୍ଡରେ ପୋଛିବେ ।<br>
ଅନ୍ନଖାଇ ସର୍ବେ ମୁଣ୍ଡେ ପୋଛୁଥିବେ ହସ୍ତ,<br>
ତେବେ ବଡ଼ ଦେଉଳକୁ ଯିବି ଜଗନ୍ନାଥ ।

ଲକ୍ଷ୍ମୀଙ୍କର ଏହି ସର୍ତ୍ତମୂଳକ ଉକ୍ତି ମଧ୍ୟରେ ଜାତିଭେଦ ପ୍ରଥା ବିରୁଦ୍ଧରେ ଯେଉଁ ବିଦ୍ରୋହର ସୂଚନା ମିଳୁଛି ତାହା ବୋଧହୁଏ ରାମାନୁଜ ବୈଷ୍ଣବମାନଙ୍କର ଜାତିପ୍ରଥା ସଂପର୍କରେ ଉଦାରତାର ଅଭାବ ବିରୁଦ୍ଧରେ ।

ଲକ୍ଷ୍ମୀପୁରାଣ ଏକ ସାଧାରଣ ପୁରାଣ ନୁହେଁ । ଏଥିରେ କେବଳ ଏକ ପ୍ରାଚୀନ କିମ୍ବଦନ୍ତୀରୁ ପୁରାଣ ରୂପ ଦିଆଯାଇ ନାହିଁ । ସବୁ ପୁରାଣରେ ନୀତିବାକ୍ୟ ସବୁ ସଂଯୋଜିତ ହୋଇଥାଏ । କିନ୍ତୁ ଏଥିରେ ଥିବା ନୀତିବାକ୍ୟ ସବୁ ବିଶେଷ କରି ଓଡ଼ିଶାର ଗୃହଲକ୍ଷ୍ମୀମାନଙ୍କ ପାଇଁ ଉଦ୍ଦିଷ୍ଟ । ଗୃହଲକ୍ଷ୍ମୀମାନଙ୍କର ଆଚାର ବିଚାରକୁ ନିୟନ୍ତ୍ରିତ କରିବାପାଇଁ ଏଥିରେ ବଳରାମ ଯେଉଁ ପ୍ରଚେଷ୍ଟା କରିଛନ୍ତି, ତାହା କେବଳ ଲୋକପ୍ରିୟତା ହାସଲ କରିଥିଲା, ତା'ନୁହେଁ, ତାହା ଗୃହଲକ୍ଷ୍ମୀମାନଙ୍କର ବେଦରୂପେ ପ୍ରତିଷ୍ଠିତ ହୋଇଥିଲା । ଗୃହଲକ୍ଷ୍ମୀମାନଙ୍କ

ଉଦ୍ଦେଶ୍ୟରେ କୁହାଯାଇଛି :

ସକାଳ ଶେଯରୁ ଉଠି ମୁଖ ଯେ ନଧୁଏ,
ତା ମୁଖ ଯେ ଜନ ଦେଖେ ତାର ଶୁଭନୁହେଁ ।
ରାତ୍ରିଶେଷେ ବାସି ଶେଯେ ଯେ କରେ ଶୟନ,
ତା' ଗୃହକୁ ପରିତ୍ୟାଗ କରନ୍ତି ବନ୍ଧନ ।
ସଂଧ୍ୟାରେ କୁଣ୍ଡାଇ କେଶ ବାନ୍ଧେ ଯେଉଁନାରୀ,
କେଭେ ନ ଦେଖନ୍ତି ଲକ୍ଷ୍ମୀ ତାହାର ଯେ ପୁରୀ ।

ଯେଉଁନାରୀ ନିଜ ପତିଠାରେ ରୋଷବନ୍ଧେ,
ସ୍ୱାମୀ ଯାହା ବୋଲେ ତାହା ନକରେ କେବେହେଁ ।

କଳହି ଅଳସୀ ଅତି ଅପ୍ରିୟା ସାହସୀ,
ଦେବ ବିପ୍ର ଅତିଥିରେ ନୁହଇଁ ବିଶ୍ୱାସୀ ।
ଏପରି ନାରୀ ଯେ ଗୃହେ ଥାଏ ସେ 'ଶ୍ମଶାନ',
ଲକ୍ଷ୍ମୀ ସେ ସ୍ଥାନକୁ ସଦା କରନ୍ତି ବର୍ଜନ ।

ନାରୀ ଜାତିର ସ୍ୱାଧୀନତା ସଂପର୍କରେ ସେତେବେଳେ ଯେଉଁ ମହାପୁରୁଷମାନେ ସମାଜରେ ପ୍ରଚାର ଆରମ୍ଭ କରିଥିଲେ, ସେମାନଙ୍କ ମଧ୍ୟରେ ସାରଳା ଦାସ ଓ ବଳରାମ ଦାସ ମୁଖ୍ୟ ଥିଲେ । ସାରଳା ଦାସ ଚଣ୍ଡୀପୁରାଣରେ ନାରୀମାନଙ୍କ ସ୍ୱାଧୀନତା ସପକ୍ଷରେ ପ୍ରଚାର ଆରମ୍ଭ କଲେ । ସେହି ସୂତ୍ରକୁ ଗ୍ରହଣ କରି ବଳରାମ ଦାସ ରଚନା କଲେ ଲକ୍ଷ୍ମୀ ପୁରାଣ । ଯେଉଁମାନେ ବିଶ୍ୱାସ କରୁଥିଲେ ନାରୀ ହେଉଛି ପାଦର ପାଣ୍ଡୋଇ ସଦୃଶ, ଯେତେବେଳେ ଇଚ୍ଛା ତାକୁ ପରିତ୍ୟାଗ କରି ନୂଆ ପାଣ୍ଡୋଇ ବା ନୂଆ ସ୍ତ୍ରୀ ଗ୍ରହଣ କରିହେବ, ସେମାନଙ୍କ ବିରୁଦ୍ଧରେ ଲକ୍ଷ୍ମୀପୁରାଣ ଥିଲା ଏକ ଚେତାବନୀ । ସାରଳା ଦାସଙ୍କ ପରି ବଳରାମ ଦାସ ମଧ୍ୟ ଘୋଷଣା କଲେ ନାରୀ ଅବଳା ନୁହେଁ । ସେ ଶକ୍ତି ସ୍ୱରୁପିଣୀ । ତା'ର ଅଭାବରେ ସୁନାଗୃହ ଶ୍ମଶାନରେ ପରିଣତ ହୁଏ । ସେଥିପାଇଁ ନାରୀମାନଙ୍କ ଉପରେ ଅତ୍ୟାଚାର ନକରି ସେମାନଙ୍କୁ ଗୃହଲକ୍ଷ୍ମୀଭାବେ ଆଦର କରିବା ଆବଶ୍ୟକ ।

ଏହିପରି ବହୁ ଦୃଷ୍ଟିରୁ ଦେଖିଲେ ବଳରାମ ଦାସଙ୍କ ଲକ୍ଷ୍ମୀ ପୁରାଣରେ ସମାଜ

ସଂସ୍କାରର ମନୋବୃତ୍ତି ପ୍ରକାଶ ପାଇଥାଏ । ନାରୀମାନଙ୍କର ସ୍ୱାଧୀନତା, ଜାତିଭେଦ ପ୍ରଥାର ବିଲୋପ ଏବଂ ଶୃଙ୍ଖଳିତ ଜୀବନ ଯାପନ ସଂପର୍କରେ ଏଥିରେ ଉଦ୍‌ଘୋଷିତ ବାଣୀ ଚିରଦିନ ଅମ୍ଳାନ ହୋଇ ରହିଥିବ ।

**ଭାବସମୁଦ୍ର :**

ବଳରାମ ଦାସଙ୍କ ଜୀବନରେ ଏକ ମହତ୍ତ୍ୱପୂର୍ଣ୍ଣ ଘଟଣା ଏହି ଗ୍ରନ୍ଥରେ ଚିତ୍ରିତ । ନିଜେ ବଳରାମ ଦାସ ନିଜର ମହିମା ଏଥିରେ ପ୍ରଚାର କରିଛନ୍ତି । ସେ କିପରି ଜଗନ୍ନାଥଙ୍କୁ ବଶ କରି ପାରିଥିଲେ ଏବଂ ସଂପୃକ୍ତ ରାଜାଙ୍କୁ ଦଣ୍ଡଦେବାକୁ କିପରି ସମର୍ଥ ହୋଇଥିଲେ, ତାହାହିଁ ଏ ଗ୍ରନ୍ଥରେ ବର୍ଣ୍ଣିତ । ନିଜର ମହିମାକୁ ନିଜେ ପ୍ରଚାର କରିଥିବାରୁ ପଣ୍ଡିତ ନୀଳକଣ୍ଠଙ୍କ ପରି ଆଲୋଚକ ଏହାର ପ୍ରାମାଣିକତାରେ ସନ୍ଦେହ ପ୍ରକାଶ କରିଛନ୍ତି ।

ଭାବ ସମୁଦ୍ରର ଦୁଇଟି ରୂପ ଦେଖିବାକୁ ମିଳେ । ଏନ୍. ଏନ୍. ସାହୁ, ଏ. ପ୍ରେସ୍. କଟକ ଦ୍ୱାରା ପ୍ରକାଶିତ ଭାବ ସମୁଦ୍ରରେ ୭୪୮ ପଦ ଥିବାବେଳେ, ଉତ୍କଳ ବିଶ୍ୱବିଦ୍ୟାଳୟ ସଂଗୃହୀତ ପ୍ରତିଲିପିରେ ୧୨୫୨ ପଦ ରହିଛି । ଏହା ଦୁଇ ଭାଗରେ ବିଭକ୍ତ ।

୧ । ବାଲିରଥ ବିଜେ-୭୫୨ ପଦ

୨ । ଭାବନ-୫୦୦ ପଦ

ଦୁଇଗ୍ରନ୍ଥକୁ ତୁଳନାକଲେ ଭାବନାର ୫୦୦ ପଦ ପ୍ରକାଶିତ ଗ୍ରନ୍ଥରେ ନଥିବା ଅନୁମାନ କରିହୁଏ ।

ଉତ୍କଳ ବିଶ୍ୱବିଦ୍ୟାଳୟରେ ସଂଗୃହୀତ ପୋଥିର ସମୟ ହେଉଛି ବୀରକିଶୋର ଦେବଙ୍କ ୫ ଅଙ୍କ ମିଥୁନ ୧୩ ଦିନ । ଏହାର ଲିଖନକାର ଦୈବଜ୍ଞ ଜଗନ୍ନାଥ ନାୟକ । ଏହି ଗ୍ରନ୍ଥର ଆରମ୍ଭରେ ଅନ୍ୟ କୌଣସି ଲିଖନକାରଙ୍କ ଦ୍ୱାରା କେତେକ ପୃଷ୍ଠା ସଂଯୋଜିତ କରାଯାଇଛି । ସେଥିରେ ଏହି ଗ୍ରନ୍ଥର ରଚନାକାଳ ଏବଂ ପଦ ସବୁର ଭାଗବତ ବିଭାଜନ ଦେଖିବାକୁ ମିଳିଥାଏ । ଗ୍ରନ୍ଥର ରଚନାକାଳ ସଂପର୍କରେ କୁହାଯାଇଛି- "ଶ୍ରୀ ପ୍ରତାପରୁଦ୍ର ଦେବ ମହାରାଜାଙ୍କର ବୀଜେ ଶୁଭରାଜ୍ୟେ ସମସ୍ତ ୧୨ ଅଙ୍କ କକଡ଼ା ମାସରେ ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ ଶ୍ରୀ ଭାବ ସମୁଦ୍ର ବଳରାମ ଦାସ ଗୋସାଇଁ କଲେ ।

ଖମା ବଡ଼ସାହି ଗୋବିନ୍ଦ ମହାନ୍ତି ବାଙ୍କାମୁହାଣ ପୁରୁଷୋତ୍ତମ ଦାସେ ଶ୍ରୀଠାକୁରଙ୍କ ଭଣ୍ଡାରୁ ପୋଥି ପାଇଲେ । ଶ୍ରୀ ମୁକୁନ୍ଦଦେବ ମହାରାଜାଙ୍କୁ ଆଜ୍ଞାକରାଇ ପୁସ୍ତକ ପଢ଼ାଇଲେ ।"

ବିଷୟବସ୍ତୁ ଦୃଷ୍ଟିରୁ ଏଥିରେ ନିମ୍ନ ବିଭାଜନ ପ୍ରଦାନ କରାଯାଇଛି ।

୧ । ମନବୋଧ ଅଖର ମୂଳ୍ହ-୮ ପଦ
୨ । ଦ୍ରାଢ- ୨ ପଦ
୩ । କ୍ଷେତ୍ରମହାତ୍ମା-୮ ପଦ
୪ । ନୀଳମାଧବ-୧ ପଦ
୫ । ଦାରୁବ୍ରହ୍ମ ଅବତୀର୍ଣ୍ଣ-୧୫ ପଦ
୬ । ଏଥର ନୀତି-୪୯ ପଦ
୭ । ଦ୍ୱାଦଶ ଯାତ୍ରା-୪୧ ପଦ
୮ । ଓଷଣ-୩ ପଦ
୯ । ଗୁହାରୀ-୨୧ ପଦ
୧୦ । ସତ୍ୟ- ୫ ପଦ
୧୧ । ଦୟା- ୧୧ ପଦ
୧୨ । ବାଳିରଥ-୭୭ ପଦ
୧୩ । ମନସୂତ୍ର-୧୮ ପଦ
୧୪ । ରଥ ଚଳିବା-୧୫ ପଦ
୧୫ । ମହିମା-୧୯ ପଦ
୧୬ । ଗୁଣ-୧୩ ପଦ
୧୭ । ନାମ-୧୯ ପଦ
୧୮ । ଭକ୍ତବତ୍ସଳ-୧୪ ପଦ
୧୯ । ବାନା-୨୧ ପଦ
୨୦ । ସାଆନ୍ତ ସେବକ-୪୦ ପଦ
୨୧ । ଭାବ-୪୬ ପଦ
୨୨ । ଗର୍ବଗଞ୍ଜନ-୧୮ ପଦ
୨୩ । ପାପପୁଣ୍ୟ-୧୨ ପଦ

୨୪ । ମାୟା-୧୭ ପଦ

୨୫ । ତୁଷ୍ଟି-୨୩ ପଦ

୨୬ । ଅଭିମାନ-୪୯ ପଦ

୨୭ । ପାରୁଷ ବଚନ-୧୬ ପଦ

୨୮ । ରାମାବତାର-୮୮ ପଦ

୨୯ । କୃଷ୍ଣ ଅବତାର-୪୫୨ ପଦ

୩୦ । ଦଶାବତାର-୨୮ ପଦ

୩୧ । ନିଶା ପ୍ରଶଂସା-୩୫ ପଦ

୩୨ । ବାହୁଡ଼ା ରଥ ବିଜେ-୭୯ ପଦ

୩୩ । ଲକ୍ଷ୍ମୀନାରାୟଣ ଭେଟ-୫ ପଦ

୩୪ । ପଦଶେଷ-୧୧ ପଦ

୩୫ । ଗାଏ ଗଣିତା ପ୍ରମାଣେ-୩ ପଦ

ଗୀତ-୧୨୫୨ ପୈଠ ।

ପୋଥିର ଏହି ଅଂଶଟି ମୂଳ ପୋଥି ପରି ପୁରୁଣା ନୁହେଁ । ଯେତେଦୂର ଜଣାଯାଏ, କୌଣସି ଦୁଷ୍ଟବୁଦ୍ଧି ଅନୁଲିପିକାର ଗ୍ରନ୍ଥର ପ୍ରମାଣିକତା ପ୍ରତିପାଦନ କରିବାପାଇଁ ଏହିସବୁ ଅଂଶକୁ ପରବର୍ତ୍ତୀ ସମୟରେ ମୂଳପୋଥି ସହ ସଂଯୋଜିତ କରି ଗ୍ରନ୍ଥର ରଚନାକାଳ ପାଇଁ ଏକ ପ୍ରମାଣିକ ଦଲିଲ ଦେବାପାଇଁ ପ୍ରଚେଷ୍ଟା କରିଛନ୍ତି । ତେବେ ବି ଗ୍ରନ୍ଥ ରଚିତ ହେବାପରେ ସାଧାରଣରେ ପ୍ରଚାରିତ ନହୋଇ ଠାକୁରଙ୍କ ଭଣ୍ଡାର ଘରେ ଗଚ୍ଛିତ ହୋଇଥିବା ଏବଂ ମୁକୁନ୍ଦଦେବଙ୍କ ରାଜତ୍ୱକାଳରେ ସର୍ବସମକ୍ଷରେ ପଠିତ ହୋଇଥିବା ଘଟଣାରୁ ଏହି ଦଲିଲର ସତ୍ୟତା ସଂପର୍କରେ ସନ୍ଦେହ ସୃଷ୍ଟିହୁଏ ।

ଭାବ ସମୁଦ୍ରରେ ବଳରାମ ଦାସଙ୍କ ଜୀବନର ଅଲୌକିକତା ପ୍ରଚାର କରାଯାଇଥିଲେହେଁ ତାଙ୍କ ଜୀବନ ଦର୍ଶନକୁ ଏହା ନିଖୁଣ ଭାବେ ପ୍ରକାଶ କରିଥାଏ । ବଳରାମ ଦାସଙ୍କ ସଂପର୍କୀତ ଏଥିରେ ସନ୍ନିବିଷ୍ଟ ବିଭିନ୍ନ ଉକ୍ତି ତାଙ୍କ ରଚିତ ଅନ୍ୟଗ୍ରନ୍ଥରୁ ମଧ୍ୟ ପ୍ରମାଣିତ ହୁଏ । ସେ ଦୃଷ୍ଟିରୁ ଗ୍ରନ୍ଥଟି ଅତ୍ୟନ୍ତ ଉପାଦେୟ ।

## ବଟ ଅବକାଶ

ଭାବସମୁଦ୍ର ପରି ବଟ ଅବକାଶରେ ମଧ୍ୟ ବଳରାମ ଦାସଙ୍କ ଅଲୌକିକତା ପ୍ରଚାରିତ । ଏହା ପ୍ରଥମେ ଗୋବିନ୍ଦ ରଥଙ୍କ ଦ୍ୱାରା ଏବଂ ପରେ ପ୍ରାଚୀ ଗ୍ରନ୍ଥମାଳାର

ପଞ୍ଚବିଂଶ ପୁସ୍ତକ ଭାବେ ୧୯୩୦ରେ ପ୍ରକାଶିତ । ପ୍ରକାଶିତ ଏହି ଦୁଇଟି ଗ୍ରନ୍ଥର ଭଣିତାରେ କେତେକ ମହତ୍ତ୍ୱପୂର୍ଣ୍ଣ ପାର୍ଥକ୍ୟ ପରିଦୃଷ୍ଟ ହୁଏ । ଗୋବିନ୍ଦ ରଥଙ୍କ ପ୍ରକାଶିତ ଗ୍ରନ୍ଥର ଶେଷରେ କୁହାଯାଇଛି :

ଉଗ୍ରେଶ୍ୱର ଦେବତାଙ୍କ ଚରଣେ ଶରଣ,
ଶ୍ରୀପୁରୁଷୋତ୍ତମ ଦାସ ସେବେ ଅନୁକ୍ଷଣ ।

ପ୍ରାଚୀ ସମିତିର ଶେଷ କେତୋଟି ପଦ ହେଲା:

ସୁଜ୍ଞଜନମାନେ ନଧର ମୋର ଦୋଷ,
ଶ୍ରୀଜଗନ୍ନାଥ ଶରଣ ମୁଁ ବଳରାମ ଦାସ । ୩୫୨
ବଳରାମ ଦାସ କହିଲେ ବିଶେଷେ
ପ୍ରତାପରୁଦ୍ର ରାଜା ଶୁଣିଣ ପ୍ରଶଂସେ । ୩୫୩
ସୁଜ୍ଞଜନମାନେ ନଧର ମୋର ଦୋଷ,
ଶ୍ରୀଜଗନ୍ନାଥ ଶରଣ ମୁଁ ବଳରାମ ଦାସ । ୩୫୪ ।

ଏହି ୩୫୪ ପଦଟି ୩୫୨ ପଦର ପୁନରାବୃତ୍ତି ଏବଂ ୩୫୪ ପଦ ସ୍ଥାନରେ ଗୋବିନ୍ଦ ରଥଙ୍କ ପ୍ରକାଶିତ ଗ୍ରନ୍ଥରେ 'ଉଗ୍ରେଶ୍ୱର-ଅନୁକ୍ଷଣ' ପଦଟି ଦେଖିବାକୁ ମିଳେ । ଏହି ଦୁଇଟି ପୋଥିରେ ଥିବା ପାର୍ଥକ୍ୟରୁ ଏହାର ପ୍ରାମାଣିକତା ସମ୍ପର୍କରେ ସନ୍ଦେହ ଆସିଥାଏ । ନିଜେ ବଳରାମ ନିଜର ଅଲୌକିକତା ପ୍ରଚାର କରିବାକୁ ବିଶ୍ୱାସ କରି ହୁଏନାହିଁ । ଯେତେଦୂର ଅନୁମାନ କରାଯାଏ ଏହାକୁ ପୁରୁଷୋତ୍ତମ ଦାସ ରଚନାକରି ବଳରାମ ଦାସଙ୍କ ମହିମା ପ୍ରଚାର କରିଥିଲେ । ଓଡ଼ିଶାର ପ୍ରାଚୀନ କିମ୍ବଦନ୍ତୀକୁ ଗ୍ରହଣକରି ପୁରୁଷୋତ୍ତମ ଦାସ 'କାଞ୍ଚିକାବେରୀ' ରଚନା କରିଥିଲେ । ସେଥିରେ ପୁରୁଷୋତ୍ତମ ଦାସଙ୍କ ମହିମା ପ୍ରଚାରିତ । ସେହିପରି କିମ୍ବଦନ୍ତୀକୁ ଆଧାରକରି ସେ ବୋଧହୁଏ ବଳରାମ ଦାସଙ୍କ ମହିମାକୁ ନେଇ 'ବଟ ଅବକାଶ' ରଚନା କରିଥିଲେ । ଅନ୍ୟ ସୂତ୍ରରୁ ଜଣାଯାଏ ବାଙ୍କୀ ମୁହାଣରେ ପୁରୁଷୋତ୍ତମ ଦାସ ନାମକ ଜଣେ କବି ହରିହର ଭେଟ ନାମକ ଜଣେ କବି ଗ୍ରନ୍ଥ ରଚନା କରିଥିଲେ । ଏସବୁ ଉପାଦାନକୁ ଏକତ୍ରକରି ପୁରୁଷୋତ୍ତମ ଦାସଙ୍କ ସଂପର୍କରେ ବିଶେଷ ଆଲୋଚନା ହେଲେ ପ୍ରକୃତ ରହସ୍ୟ ଉଦ୍‌ଘାଟିତ ହେବ ବୋଲି ଆଶା । ଏହାସତ୍ତ୍ୱେ ଭାବସମୁଦ୍ର ପରି ବଟ ଅବକାଶରେ ବଳରାମ ଦାସଙ୍କ ଜୀବନଦର୍ଶନର କେତେକ ସୂତ୍ର ମିଳିଥାଏ ।



# ବଳରାମ ଦାସଙ୍କ କବିତ୍ୱ

କଥା କହିବା ବଳରାମଙ୍କ ମୁଖ୍ୟ ଲକ୍ଷ୍ୟ ଥିଲେ ବି କଥା ମଝିରେ ବୋଧହୁଏ କଥାକୁ ସୁନ୍ଦର କରିବାପାଇଁ ସେ ସ୍ଥାନ ଦେଖି ବିଭିନ୍ନ ପ୍ରକାର ବର୍ଣ୍ଣନାର ସଂଯୋଜନା କରୁଥିଲେ । ରାଜକୀୟ ବିଭବ-ବର୍ଣ୍ଣନା ସେଥିମଧ୍ୟରୁ ଅନ୍ୟତମ । ବଳରାମଙ୍କ ପିତା ମନ୍ତ୍ରୀ ଥିଲେ । ଅଥଚ ରାଜଦରବାରରେ ବଳରାମଙ୍କ କାର୍ଯ୍ୟ ସମ୍ବନ୍ଧରେ କୌଣସି ସୂଚନା ମିଳେ ନାହିଁ । ତେବେ ସେ ଯେ ରାଜଦରବାର ସହ ନିବିଡ଼ ଭାବରେ ଜଡ଼ିତ ଥିଲେ ଓ ରାଜକୀୟ ପରିବେଶରେ ପାଳିତ ହୋଇଥିଲେ, ତାହା ଜଗମୋହନ ରାମାୟଣର ବିଭିନ୍ନ ବର୍ଣ୍ଣନା ପାଠକଲେ ଅନୁମାନ କରିହୁଏ ।

ରାମାୟଣର ବିଷୟବସ୍ତୁ ଦୃଷ୍ଟିରୁ ଏଥିରେ ଅଯୋଧ୍ୟା, ଲଙ୍କା ଓ କିସ୍କିନ୍ଧ୍ୟାନଗରୀ ତଥା ରାମ, ରାବଣ, ବାଳୀ ଓ ସୁଗ୍ରୀବଙ୍କ ପରି ରାଜାଙ୍କ ରାଜକୀୟ ବିଭବ ବର୍ଣ୍ଣନା କରିବା ଆବଶ୍ୟକ ଥିଲା । ଏସବୁ ବର୍ଣ୍ଣନା କଲାବେଳେ ସେ ବିଶେଷ ଭାବେ ପରମ୍ପରା ଦ୍ୱାରା ପ୍ରଭାବିତ ହୋଇଥିଲେ । ସେଥିପାଇଁ ସବୁ ନଗରୀର ଗଠନଶୈଳୀ ଓ ଐଶ୍ୱର୍ଯ୍ୟ ବର୍ଣ୍ଣନାରେ ସେ ଗୋଟିଏ ପଦ୍ଧତି ଗ୍ରହଣ କରିଛନ୍ତି । ସବୁ ନଗରୀ ମେଢ଼, ମଣ୍ଡପ, ଅଟ୍ଟାଳି, ଜଗତୀ, କୂପ, ବାମ୍ଫି, ପୋଖରୀ ଦ୍ୱାରା ସୁଶୋଭିତ । ସବୁଠାରେ ରାଜା, ମନ୍ତ୍ରୀ ଓ ସମସ୍ତଙ୍କ ପାଇଁ ଅଲଗା ଅଲଗା ଉଆସ ବା ଘର । ଅଷ୍ଟାଦଶ ଜାତିର ଲୋକଙ୍କ ପାଇଁ ସ୍ୱତନ୍ତ୍ର ସ୍ୱତନ୍ତ୍ର ବ୍ୟବସ୍ଥା । ନଗର ସବୁ ଧନଧାନ୍ୟରେ ପୂର୍ଣ୍ଣ । ସବୁ ଘର ଉପରେ କଳସ ଓ ଚିରାଳ । ସତେ ଅବା ସବୁଘରେ ଲକ୍ଷ୍ମୀ ବିରାଜିତ । ଲୋକେ ମଧ୍ୟ ସ୍ୱର୍ଗର ନରନାରୀ ପରି ସୁନ୍ଦର । ନଗର ସବୁର ସୌନ୍ଦର୍ଯ୍ୟ ପରିକଳ୍ପନା କଲାବେଳେ ତାଙ୍କୁ କେବଳ ସୁନା, ରୂପା, ହୀରା, ନୀଳା, ମୋତି ଓ ମାଣିକ୍ୟ ହିଁ ଦେଖାଯାଇଥିଲା । ଅଯୋଧ୍ୟା ନଗରୀର ବର୍ଣ୍ଣନା କରି କବି ଲେଖିଛନ୍ତି-

ରାଜାର ମନ୍ଦିର ଦିବ୍ୟ ଚାରୁକାନ୍ତି
ମେଢ଼, ମଣ୍ଡପ ଅଟ୍ଟାଳି ଜଗତୀ ।୧୯୩ ।
ଅଗରୁ ଚନ୍ଦନ ଖମ୍ବ ରୁଅ ସେଣି
ଉପରେ ତେଜପତ୍ର ଛାଇଲା ଛାୟେଣୀ ।୧୯୪ ।

ମୁକୁତାର ଝରା ନୀଳରତ୍ନ ଜଡ଼ି
ସୁବର୍ଣ୍ଣର ପ୍ରତିମା ପିତୁଳି କମଗଢ଼ି ।୧୯୫ ।
ମର୍କତର କଳସ ନେତର ଚିରାଳ
ଚନ୍ଦ୍ରାତପ ତେଜ ଆଦିତ୍ୟ ପ୍ରବଳ ।"୧୯୬ ।

ଜରତା ବେଶ୍ୟାର 'ନାଟ୍ୟାଶ୍ରମ'ରେ ମଧ୍ୟ ସେହି ରାଜକୀୟ ଥାଟ । ଅଗୁରୁ, ଚନ୍ଦନ, କର୍ପୂର, କସ୍ତୁରୀ ଓ ସୁଗନ୍ଧିତ ପୁଷ୍ପର ସୁବାସରେ ଏହା ସୁରଭିତ ।

ମୁକ୍ତା, ମଣି ଓ ସ୍ୱର୍ଣ୍ଣନିର୍ମିତ ଦ୍ରବ୍ୟ ସବୁରେ ଏହା ସୁସଜ୍ଜିତ । ଆଲଟ, ଚାମର ମୁକ୍ତା ନିର୍ମିତ ଦର୍ପଣ, ସୁବର୍ଣ୍ଣ ନିର୍ମିତ ଗଡ୍ଡୁ, ଖୋରା ଓ ଖୋରି ପ୍ରଭୃତି ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥରେ ମଧ୍ୟ ସେହି ଆଭିଜାତ୍ୟ ଓ ଆଡ଼ମ୍ବର ।

ରାଜଦରବାର ସହ ବଳରାମଙ୍କ ନିବିଡ଼ ପରିଚୟ ତାଙ୍କ ପ୍ରଦତ୍ତ ନିଯୋଗକାରୀଙ୍କ ନାମାବଳୀରୁ ଜଣାଯାଏ । ସେତେବେଳେ ରାଜଦରବାର କହିଲେ ରାଉତ ଓ ରଣରାଉତ, ମାହୁନ୍ତ, ଯୋଦ୍ଧା, ପୟେକାର ରଥୀ, ମହାରଥୀ, ପାଇକ, ସଇନି, ସେନାପତି, ଦ୍ୱାରୀ, ପାହାରୀ, ଡଗରା, ଦ୍ୱାରପାଳ, ଦୋସାଧୁ, ଟେକିଆ, ମୁକୁଟବନ୍ଧା, ଯୋଦ୍ଧା, ଭୋଡ଼ଙ୍ଗିଆ ପାଇକ, ବେହେରା, ବାରିକ, ନଟ ଭାଟ, କଏବାର, ଅଗଛାମୁଆ, ବାରତିଆ, ଦାଣ୍ଡୁ ଆଚାର ସାରଥି, ସେବାଇତ, ବିନୋଦିଆ, ଗଣିକା, ବିଳାସୁଣୀ, ଲେଙ୍କା, ଲମ୍ବହତା, ଖୁଣ୍ଟିଆ, ପଣ୍ଡା, ପଢ଼ିଆରୀ, ଭଣ୍ଡାର ଅଧିକାରୀ ଓ ଅନ୍ୟାନ୍ୟ ବିଶ୍ୱାସୀ ଲୋକଙ୍କୁ ବୁଝାଉଥିଲା । ରାଜା ଏହିମାନଙ୍କୁ ଧରି ରାଜକାର୍ଯ୍ୟ ପରିଚାଳନା କରୁଥିଲେ । ରାଜକର୍ମଚାରୀଙ୍କ ପରି ରାଜାଙ୍କ ସେବାରେ ଥିବା ବିଭିନ୍ନ ରଙ୍ଗର ଘୋଡ଼ା, ବିଭିନ୍ନ ପ୍ରକାରର ବାଦ୍ୟ ଓ ବିଭିନ୍ନ ପ୍ରକାର ଅସ୍ତ୍ର, ଶସ୍ତ୍ର, ରାଜାଙ୍କ ଉଆସରେ ଥିବା ବିଭିନ୍ନ ପ୍ରକାର ନବର (ଆସ୍ଥାନ, ନବର, ନୃତ୍ୟରଙ୍ଗ ସ୍ଥାନ, ଦେବାର୍ଚ୍ଚନା ଘର, ଦୋହରା ଘର, ରାଣୀହଂସପୁର, ତୋଟାପୁର, ଉଦ୍ୟାନ, ଜଗତୀ, ହାତୀ ଘୋଡ଼ା ଶାଳ, ଭଣ୍ଡାର ଘର, ବିଭିନ୍ନ ପ୍ରକାର ବାହାନ, ଯାନ, ସୁକାସନ, ଖଟଦୋଳ, ଚଉଦୋଳ, ବାଂକିଆ, ହୟ, ଗଜ, ରଥ) ବିଭିନ୍ନ ପ୍ରକାର ରାଜକୀୟ ସଂକେତ (ଛତ୍ର, ଚିରାଳ, ଆଲମ୍ବ,ବିଲମ୍ବ, ଉଲାଖ, ବୀରନେତ)ର ବାରମ୍ବାର ବର୍ଣ୍ଣନାକରି ସେ ରାଜକୀୟ ଐଶ୍ୱର୍ଯ୍ୟ ପ୍ରତି ଶ୍ରୋତାଙ୍କ ଦୃଷ୍ଟି ଆକୃଷ୍ଟ କରିଛନ୍ତି ।

ଜଗମୋହନ ରାମାୟଣର ବହୁ ସ୍ଥଳରେ ବଳରାମ ରାଜକୀୟ ବିଭବ ପ୍ରଦର୍ଶନର ଆୟୋଜନ କରିଥିଲେ ହେଁ ଲଙ୍କାକାଣ୍ଡରେ ରାବଣର ଯୁଦ୍ଧଯାତ୍ରା ବେଳେ ଏହାପାଇଁ ଆହୁରି

ଏକ ଅପୂର୍ବ ସୁଯୋଗ ଉପସ୍ଥିତ ହୁଏ । ଯୁଦ୍ଧରେ ବାରମ୍ୱାର ପରାସ୍ତ ହେବା ପରେ ରାବଣ ହତାଶ ହୋଇପଡ଼େ । ଏହି ହତାଶ ଭାବକୁ ଦୂର କରିବାପାଇଁ ସେ ଆୟୋଜନ କରେ ଅଳଙ୍କାର ଓ ବସ୍ତ୍ରର ଏକ ପ୍ରଦର୍ଶନୀ । ସେତେବେଳେ ସେ ଭାବେ:

ଏ ମୋହର ଅର୍ଜିଲା ଅଟଇ ସିନା ଧନ
ଚଉଦଭୁବନୁ ବାଛି ଆଣିଲି ଏମାନ ।
ଏଥକୁ ହିଁ ଦେବଙ୍କ ଭଣ୍ଡାର ନୋହେ ସରି
ସପତ ନିଧି ମୁଁ ପୂରାଇଲି ଯତ୍ନ କରି ।
ଏବେ ଏହା ବିଧ୍ୱଂସିବି ଶ୍ରୀରାମ ନିମନ୍ତେ
ଦେହ ଥିଲେ ପୁଣି ତାହା ଅର୍ଜିବି କିଞ୍ଚିତେ ।

ଏବଂ ଆଦେଶ ଦିଏ-

ଯେ ଯାହାର ଅନୁରୂପେ ଦିଅ ଆୟେମାନ
ବିଚିତ୍ର ବସ୍ତ୍ରମାନ ବିଳସ ଅନୁକ୍ଷଣ ।
ଯେତେ ଲୋକ ସଂଗ୍ରାମକୁ ଯିବେ ମୋହ ସଙ୍ଗେ
ଅଳଙ୍କାର ମଣ୍ଡି ହୋଇ ଥିବେ ସେ ସର୍ବାଙ୍ଗେ
ଦେଖିବା ମାତ୍ରକେ ଶତ୍ରୁ ହୋଇବ ଅଜ୍ଞାନ
ବୋଲିବ ଅର୍ଜିଲେ ଏ କେମନ୍ତେ ଏତେ ଧନ ।

ରାବଣର ଏହି ଆଦେଶ ପରେ ଲଙ୍କାପୁରର ଭଣ୍ଡାର ଶୂନ୍ୟ ହୋଇଗଲା । ଯୋଦ୍ଧାମାନେ ନେତ, ପାଟ, ପତନୀ, ହନୁଆ, ବସନ, ପାଟ, ପାଛୋଟି, ଦୋସରା, ନେପୂର, ମୁକ୍ତା, ରତ୍ନମାଳା, ହାର, ତାଟଙ୍କ, କିରୀଟି, ବିଦ, ସୁନାସୂତା, କଙ୍କଣ, ମୁଦି, ସୁବର୍ଣ୍ଣପଇତା, ତାଡ଼, ସରଳ, ଶିକୁଳି, ସୁନା ଓ ଚଉସରା ପ୍ରଭୃତି ଅଳଙ୍କାରରେ ମଣ୍ଡିତ ହୋଇ ଯୁଦ୍ଧକ୍ଷେତ୍ରକୁ ବାହାରିଲେ । ପ୍ରତ୍ୟେକ ଅଳଙ୍କାରରେ ପୁଣି ବ୍ରହ୍ମଜାତ ହୀରା, ମର୍କତମଣି, ପ୍ରବାଳ, ମାଣିକ୍ୟ, ପଦ୍ମପୁଷ୍ପରାଗ ଓ କୁରୁବିନ୍ଦ ପ୍ରଭୃତି ବହୁମୂଲ୍ୟ ରତ୍ନଖଚିତ । ଶ୍ରେଷ୍ଠ ଯୋଦ୍ଧାଙ୍କ ପାଇଁ କନକ ସ୍ନାନ, ମୁକ୍ତାସ୍ନାନ, କର୍ପୂରଗୁଣ୍ଡି ସ୍ନାନର ବ୍ୟବସ୍ଥା ଥିଲା । ପ୍ରତିଷ୍ଠିତ ଯୋଦ୍ଧାମାନଙ୍କୁ କପାଳରେ କସ୍ତୁରୀ, କଳେବରରେ ଗନ୍ଧ, ଯୁଆଦ ଓ ଚତୁଃସମଲେପନ ଦ୍ୱାରା ସମ୍ମାନିତ କରି ଯୁଦ୍ଧକ୍ଷେତ୍ରକୁ ପ୍ରେରଣ କରାଯାଉଥିଲା ।

କେବଳ ବସ୍ତ୍ର ଓ ଅଳଙ୍କାର ନୁହେଁ, ଖାଦ୍ୟପେୟରେ ମଧ୍ୟ ରାଜାଘରର ଠାଣି ସମ୍ପୂର୍ଣ୍ଣଭାବେ ଦେଖିହୁଏ । ଭରଦ୍ୱାଜ ଓ ବଶିଷ୍ଠଙ୍କ ଆଶ୍ରମ, ପୁଣି ଅଯୋଧ୍ୟାର ଭୋଜିରେ

ବଳରାମ ଯେଉଁ ଖାଦ୍ୟସାମଗ୍ରୀର ଉଲ୍ଲେଖ କରିଛନ୍ତି, ସେସବୁକୁ ଜଗନ୍ନାଥ ମନ୍ଦିରରେ ନତୁବା ଗଜପତିଙ୍କ ରାଜପ୍ରାସାଦରେ ସେ ଦେଖିଥିବେ । ସାଧାରଣ ଲୋକଙ୍କ ଘରେ ଏସବୁ ମିଳିବା ତ ଦୂରର କଥା, ଅନେକେ ହୁଏତ ନାଁ ଶୁଣି ନଥିବେ । ପୁରାଣ ମାଧ୍ୟମରେ ସେସବୁ ଖାଦ୍ୟପେୟର ନାଁ ଶୁଣି କୃତାର୍ଥ ହେବାଛଡ଼ା ଗରିବ ଓଡ଼ିଆ ପକ୍ଷରେ ଆଉ ଉପାୟ ବା କ'ଣ ଥିଲା ? ସହସ୍ରାର୍ଜ୍ଜୁନ ସେନାଙ୍କ ମୁଖରେ କବି ସେହିକଥା ହିଁ କହିଛନ୍ତି-

ଦେଖି ନଥିଲୁ ଯେ ପୁଣି ଖାଇ ଯେ ନଥିଲୁ
ଅପୂର୍ବ ପଦାର୍ଥମାନ ନୟନେ ଦେଖିଲୁ
ବସ୍ତ୍ର ଅଳଂକାର ଦେଖି ହେଲୁ ଆଚମ୍ଭିତ
କାହୁଁ ଏହା ଭିଆଇଲ କହ ମୁନି ସତ୍ୟ ।

(ଅଯୋଧ୍ୟା-ପୃ ୧୧)

ଏହା କେବଳ ସହସ୍ରାର୍ଜ୍ଜୁନର କଥା ନୁହେଁ, ଏହା ହେଉଛି ସମସ୍ତ ଓଡ଼ିଆ ସମାଜର ହୃଦୟବାଣୀ ।

ରାଜ ଦରବାର ସହ ନିକଟସଂପର୍କରୁ ରାଜଐଶ୍ୱର୍ଯ୍ୟ ବର୍ଣ୍ଣନା କରିବା ପାଇଁ ବଳରାମ ଯେ ପ୍ରୋତ୍ସାହିତ ହୋଇଥିଲେ, ତାହା ନୁହେଁ, ଏହା ଥିଲା ସେ ଯୁଗର ଏକ ସ୍ୱାଭାବିକ ପ୍ରବୃତ୍ତି । ନିଜର ନଥିଲେ ବି ଅନ୍ୟର ଐଶ୍ୱର୍ଯ୍ୟରେ ଲୋକେ ଈର୍ଷାନ୍ୱିତ ହେଉନଥିଲେ । ବରଂ ଅନ୍ୟର ସୁଖ ଦେଖି ସୁଖୀ ହେଉଥିଲେ । ଭାଗ୍ୟବାଦୀ ଭାରତୀୟ ଜନତା ନିଜ ଭାଗ୍ୟକୁ ଆଦରି ସୁଖୀ ହେବାରେ ଅଭ୍ୟସ୍ତ ଥିଲେ । ସେମାନଙ୍କ ଚକ୍ଷୁରେ ରାଜା ଓ ଦେବତା ମଧ୍ୟରେ ପାର୍ଥକ୍ୟ ନଥିଲା । ପୁରୀର ଗଜପତି ଥିଲେ ଚଳନ୍ତି ବିଷ୍ଣୁ । ଯେପରି ଦିଲ୍ଲୀର ସମ୍ରାଟ ଥିଲେ ଦିଲ୍ଲୀଶ୍ୱରୋବା ଜଗଦୀଶ୍ୱରୋବା । ପୁଣି ପୁରାଣରୁ ସେଇ ତ ନିଜକଥା ଶୁଣୁନଥିଲେ, ଶୁଣୁଥିଲେ ବିଷ୍ଣୁଙ୍କ ଅବତାର ଶ୍ରୀରାମ ବା ପରମବ୍ରହ୍ମଙ୍କ କଥା । ସେ ଜଗତର ମାଲିକ । ହୀରା, ନୀଳା, ମୋତି, ମାଣିକ୍ୟ ସବୁ ତ ତାଙ୍କରି ସୃଷ୍ଟି । ସେଥିପାଇଁ ସେମାନେ ଭଲ ଭାବରେ ଜାଣିଥିଲେ ଯେ ହୀରା, ନୀଳା, ମୋତି ମାଣିକ୍ୟ ରାଜା ବା ଦେବଭୋଗ୍ୟ ପଦାର୍ଥ । ଜଗମୋହନ ରାମାୟଣର ଗୋପାଳ ପରି ଏ ଦେଶର ସାଧାରଣ ଜନତା କେବଳ ଏ ସବୁ ବହୁମୂଲ୍ୟ ପଦାର୍ଥକୁ ଦେଖି ନଥିଲେ, ତାହା ନୁହେଁ; ସାଧାରଣ ଜୀବନ ନିର୍ବାହ ପାଇଁ ଏ ସବୁର ଅସାରତା ମଧ୍ୟ ଭଲଭାବେ ବୁଝୁଥିଲେ ।

ଶୁଣିଣ ଉପହାସ୍ୟ କରିନ୍ତି ଗୋପାଳେ
କେ ଜାଣଇ ମଣି କେବଣ ଗଛେ ଫଳେ ।

ଆମ୍ଭେ ତୋତେ କିମ୍ବା ମାଗଣା ଦୁଧ ଦେବୁ
ଏହା ବିକି ଆମ୍ଭେ କୁଟୁମ୍ବ ପୋଷିବୁ ।

ସାଧାରଣ ଜୀବନରେ ମଣି ମାଣିକ୍ୟର ଆବଶ୍ୟକତା ନଥିଲେ ବି କାବ୍ୟ ପୁରାଣରୁ ଶୁଣି ଆନନ୍ଦ ନେବାରେ ଆପତ୍ତି ନଥିଲା । ସେଥିପାଇଁ ସେ ଯୁଗର ପ୍ରାୟ ସବୁ କବି ହୀରା, ନୀଳା, ମୋତି, ମାଣିକ୍ୟର କଥାକୁ ଆବାଧରେ ବ୍ୟବହାର କରୁଥିଲେ । ବାହାରକୁ ବାହାରିବା ବେଳେ ସଜେଇ ହୋଇ ଯିବାକୁ ହୁଏ । ଏହା ମଧ ଥିଲା କାବ୍ୟର ପରମ୍ପରା । ପାଠକ ବା ଶ୍ରୋତାମାନେ ମଧ ଏହି ପରମ୍ପରା ସହ ନିବିଡ଼ ଭାବେ ପରିଚିତ ଥିଲେ । କେବଳ ଦେଶ ଓ କାଳ ଭେଦରେ କବି ନିଜର ବ୍ୟକ୍ତିଗତ ମୁଦ୍ରାଙ୍କ ଏହା ଉପରେ ଅଙ୍କିତ କରି ନିଜ ପ୍ରତିଭାର ପରିଚୟ ଦେଉଥିଲା । ସେଇଥିରୁ ପରୀକ୍ଷିତ ହେଉଥିଲା କବିଙ୍କ ପାରିଲାପଣ । ଏକ ଦିଗରେ ରାଜକୀୟ ବିଭବର ଆଡ଼ମ୍ବରପୂର୍ଣ୍ଣ ବର୍ଣ୍ଣନା, ଅନ୍ୟପକ୍ଷରେ ସହସ୍ରାର୍ଜ୍ଜୁନ ଓ ଗୋପାଳଙ୍କ ପରି ଆଶ୍ଚର୍ଯ୍ୟ, ଚକିତ ଓ ଆଚମ୍ବିତ ହେଉଥିବା ସାଧାରଣ ଲୋକଙ୍କ ମଧ ଦେଇ ଜଗମୋହନ ରାମାୟଣର କଥା ଓ ବର୍ଣ୍ଣନା ଗତି କରିଛି । ବଳରାମ ଯେ ସବୁବେଳେ ରାଜକୀୟ ବିଭବର ବର୍ଣ୍ଣନା କରୁଥିଲେ ତାହା ନୁହେଁ, ବେଳେବେଳେ ଗୁହଶବର ଓ ମନ୍ଥରା ପରି ସାଧାରଣ ଚରିତ୍ର ମଧ କବିଙ୍କ ଦୃଷ୍ଟିକୁ ଆକୃଷ୍ଟ କରିଥିଲା । ବାଲ୍ମିକୀ ରାମାୟଣର କନ୍ଧ ଜାତୀୟ ଗୁହଶବର ହେଲା ବଳରାମଙ୍କ ଗୁହଶବର । ଶବରୁଣୀର ରାମଭକ୍ତି ଓ ଶବର ଜାତିର ଜଗନ୍ନାଥ ପୂଜା ବିଷୟରେ କବି ସଚେତନ ଥିଲେ । ସେଥିପାଇଁ ଜଗମୋହନ ରାମାୟଣରେ ଗୁହଶବର ପ୍ରସଙ୍ଗ ଆସିବାକ୍ଷଣି କବି ବଳରାମ ଗୁହ ଓ ସେହି ଜାତୀୟ ଲୋକଙ୍କ ପାଇଁ ଏକ ସ୍ୱତନ୍ତ୍ର ସ୍ଥାନ ଖୋଜିନେଲେ । ଗୁହର ପ୍ରତିନିଧିତ୍ୱରେ ସମସ୍ତ ଶବର ଜାତି ହେଲେ ଶ୍ରୀରାମଙ୍କ ମିତ୍ର । କବି ଶ୍ରୀରାମ ଓ ଶବର ଜାତିର ମିତ୍ରତା ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସେମାନଙ୍କ ବେଶଭୂଷା, ଖାଦ୍ୟପେୟର ବିସ୍ତୃତ ବର୍ଣ୍ଣନା ଦେଇଛନ୍ତି ; ଅଯୋଧ୍ୟାକାଣ୍ଡରେ ପୁଣି ଲଙ୍କାକାଣ୍ଡରେ । ଏହି ବର୍ଣ୍ଣନାରେ ଶବର ଜାତି ପ୍ରତି କବିଙ୍କ ସହାନୁଭୂତି ଯେ କେବଳ ପ୍ରକାଶ ପାଇଛି ତାହା ନୁହେଁ, ଏ ଯୁଗର ନୃତତ୍ତ୍ୱବିତ୍‌ମାନଙ୍କ ପରି ସେ ସେମାନଙ୍କ ସଂସ୍କୃତି ଓ ଚଳଣିକୁ ନିବିଡ଼ ଭାବେ ପରୀକ୍ଷା କରି ଦେଖିଛନ୍ତି ।

ବଳରାମଙ୍କ ବାସ୍ତବ ଦୃଷ୍ଟିଭଙ୍ଗୀ ଦାସୀମାନଙ୍କ ବର୍ଣ୍ଣନାରେ ଆହୁରି ସ୍ପଷ୍ଟ । ବୃଦ୍ଧରାଜା ଦଶରଥଙ୍କ ପୁତ୍ର ଜନ୍ମୋତ୍ସବରେ ସବୁଠାରୁ ବେଶି ଖୁସି ହୋଇଥିଲେ ଅଯୋଧ୍ୟାର ଅଧିବାସୀମାନେ । ସେମାନଙ୍କ ଆନନ୍ଦ ଆଉ ଅନ୍ତଃପୁର ମଧରେ ଆବଦ୍ଧ ହୋଇ ରହି ପାରି ନଥିଲା । ସେମାନେ ଅଯୋଧ୍ୟାର ରାଜଦାଣ୍ଡରେ ତୁଣ୍ଡରେ ପାନ ଓ ମୁଣ୍ଡରେ ଫୁଲଖୋସି,

ମୃଗାହସା ଦେଇ, ଆଡ଼କରି ଚାହିଁ, ଲମ୍ବପଣତ ଉଡ଼ାଇ, ଗାଲରେ ହଳଦୀ ଓ ଆଖିରେ କଜ୍ଜଳ ବୋଳି, ଖୋଷାର ଫୁଲମାନଙ୍କୁ ବାରମ୍ବାର ଖୋଲି, ହିଆର ପଣତକୁ ଆଡ଼ କରି କ୍ଷଣେ ଚାଲି, କ୍ଷଣେ ଦଉଡ଼ି ନିଜର ଉଲ୍ଲାସ ପ୍ରକାଶ କରିଥିଲେ । ମହୁରାର ବର୍ଣ୍ଣନା କଲାବେଳେ ମଧ୍ୟ କବି ସେହିକଥା ଲେଖିଛନ୍ତି-

ତୁଣ୍ଡେ ତାର ପାନ ଯେ ମଥାରେ ଫୁଲ ଖୋସା
ଲୋକଙ୍କୁ ଦେଖିଣ ଯେ ଦିଅଇ ମୁର୍ଗାହସା ।
ଗାଲରେ ହଳଦୀ ଚୂନ ଯେ ନୟନେ କଜ୍ଜଳ,
x x x
ଶାଢ଼ୀର ଅଞ୍ଚଳ ତାର ଭୂମିରେ ଲୋଟଇ
ଫରଫର ଉଡ଼ଇ ଭୂମିରେ ସାଉଣ୍ଟଇ ।

ନଗରରେ ଦାନଧର୍ମ ହେଲାବେଳେ ବିଭିନ୍ନ ଲୋକ ବିଭିନ୍ନ ପ୍ରକାର ଜିନିଷ ପ୍ରତି ଆକୃଷ୍ଟ ହୋଇଥାନ୍ତି ଅଥଚ ଦାସୀମାନେ ନିଅନ୍ତି ଧନ, ବସ୍ତ୍ର, ଥାଳି, ଝରି ଓ ଡାବରି ।

ମିଥିଳା ନଗରର ନାଗରୀମାନଙ୍କର ବିଭ୍ରମ ବର୍ଣ୍ଣନା କଲାବେଳେ ମଧ୍ୟ କବିଙ୍କ ଦୃଷ୍ଟି ରାଜପୁରରେ ସୀମିତ ହୋଇ ରହିନାହିଁ । ଏ ବର୍ଣ୍ଣନାରୁ କବିଙ୍କ ରସିକତାକୁ ମୁକ୍ତ କରିଦେଲେ, ଓଡ଼ିଆ ଗାଁର ଏକ ସାଧାରଣ ଦୃଶ୍ୟ ଆଖି ଆଗରେ ଝଲସି ଉଠେ । ବର ଦେଖିବା ପାଇଁ ଆବାଲବୃଦ୍ଧବନିତାଙ୍କର ଅସୀମ ଆଗ୍ରହ ଏଥିରେ ପ୍ରତିଫଳିତ । ମଳାଶୁର, ଦେଢ଼ଶୁର, ଶ୍ୱଶୁର ଓ ଅନ୍ୟାନ୍ୟ ଗୁରୁଜନମାନଙ୍କ ଉପସ୍ଥିତିକୁ ଉପେକ୍ଷାକରି ଓଡ଼ିଆ ନାରୀ ଯେଉଁଭାବେ ବର ଦେଖିବା ପାଇଁ ବାହାରି ଆସେ, ଏହା ହେଉଛି ତାହାର ଏକ ଜୀବନ୍ତ ଦୃଶ୍ୟ । ଦେହ ଘୋଡ଼ାଇବା ପାଇଁ ସେଇ ଖଣ୍ଡିଏ ଶାଢ଼ୀ । ଦଉଡ଼ିବାବେଳେ ସେଥିରୁ ଅଧେ ଦିହରୁ ଖସି ଯାଇ ମାଟିରେ ଘୁସୁରୁଥାଏ । ରସିକ ବଳରାମ ଯୁବତୀମାନଙ୍କର ଠାଣି ଓ ଚାହାଣିରେ ବିମୋହିତ ହୋଇ ରସସିକ୍ତ ପଦସବୁ ରଚନା କରୁଥିଲେ ହେଁ, ସେଥିରୁ ବାସ୍ତବତାକୁ ଠଉରାଇବାରେ ଅସୁବିଧା ହୁଏ ନାହିଁ ।

ଗଜ, ଅଶ୍ୱ ଓ ରଥର ସାଜସଜ୍ଜାରେ ରାଜକୀୟ ବିଭବ ସାଧାରଣତଃ ପ୍ରକାଶିତ ହୋଇଥାଏ । ଜଗମୋହନ ରାମାୟଣରେ ଏ ସବୁର ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ । ଦଶରଥ ମିଥିଳାକୁ ଗଲାବେଳେ ସୁମନ୍ତ ସହିତ ଅଶ୍ୱାରୋହୀମାନେ, ବଶିଷ୍ଠଙ୍କ ତତ୍ତ୍ୱାବଧାନରେ ରାଣୀମାନେ ଢାଢୋଲା ଓ ପାଲଙ୍କିରେ ଏବଂ ଦଶରଥ 'ସହସ୍ରେକ ହାଥି' ପରିବେଷ୍ଟିତ

ହୋଇ ହାତୀ ଉପରେ ଯାତ୍ରା ଆରମ୍ଭ କରିଥିଲେ । ଦଶରଥଙ୍କ ହାତୀର ନାମ ଥିଲା ଶତ୍ରୁଜୟ । ଦକ୍ଷିଣ ଭାଗରେ ସୁମନ୍ତଙ୍କ ପୁତ୍ର ବିଦ୍ୟାଧର । ତାଙ୍କ ହାତୀଙ୍କ ନାମ ଥିଲା ବଇରି ବିଭାଣ୍ଡକ । ସେ ରାଜାଙ୍କ ଶିର ଉପରେ ବୀରଛତ୍ର ଧାରଣ କରିଥିଲେ । ବାମ ପାଖରେ ଯାବାଳିଙ୍କ ପୁତ୍ର ସୋମଧର । ତାଙ୍କ ହାତୀଙ୍କ ନାମ ଶତ୍ରୁମର୍ଦ୍ଦନ । ସେ ରାଜାଙ୍କୁ ତାମ୍ବୁଳ ଯୋଗାଉଥିଲେ । ଏହି ତିନୋଟିଯାକ ଗଜ ସମତୁଲ ହୋଇ ଚାଲିଥିଲେ । ଏଥିରୁ ରାଜାଙ୍କ ହାତୀ ଐରାବତ କିବା ଦିଗଗଜ ପରି ଶୋଭା ପାଉଥିଲା । ତା'ର ସର୍ବାଙ୍ଗ ଶ୍ୱେତ ଚାମର ଦ୍ୱାରା ସୁଶୋଭିତ । କଣ୍ଠଦେଶରେ ପାଟ ଦଉଡ଼ି ଓ ସୁବର୍ଣ୍ଣ ଶିକୁଳିରେ ବନ୍ଧା ରୂପା ଛାଉଣି ହୋଇଥିବା କଂସା ଘଣ୍ଟି ମୂଳରେ ଲୁହାର ଥୋପା, ଚରଣରେ ଘାଗୁଡ଼ି ମାଳା, ହସ୍ତୀ ଗମନ କଲାବେଳେ ସେ ସବୁରୁ ଶବ୍ଦ ପ୍ରକାଶିତ ହେଉଥିଲା । ଶ୍ୱେତଚାମର, ରଙ୍ଗପାଟ, ଲୁହା ଆରେଣି, ହାତୀର କଣ୍ଠଦେଶରେ ସୁସଜ୍ଜିତ ଥିଲା । ଏହା ବ୍ୟତୀତ ମୁକ୍ତାର ଝରା, ନୀଳା, ମଣି, ରଙ୍ଗ ପୋୟଲା ଗଣ୍ଡସ୍ଥଳରେ ଶୋଭା ପାଉଥିଲା । ଏସବୁ ସହିତ-

ପୁସ୍ୟେଣ ଶୋଭାବନ ଦିଶଇ ମାତଙ୍ଗ
କପୋଳେ ଘଷିଲା ଅଛଇ ଅଭଙ୍ଗ
କର୍ଣ୍ଣ ପର୍ବତ ପରିଯନ୍ତେ କସ୍ତୁରୀ ଲେଖନ
ରନ୍ଧ୍ରେ ଲଲାଟ ପାଟି ଦିଶଇ ଶୋଭାବନ ।

ଏହିପରି ଏକ ସୁସଜ୍ଜିତ ହସ୍ତୀର କନ୍ଧ ଦେଶରେ ନେତର ତୁଳି ସବୁ ନିବିଡ଼ କରି ବନ୍ଧା ହୋଇଥିଲା । ତା'ରି ଉପରେ ଉପବେଶନ କରିଥିଲେ ମହାରାଜା ଦଶରଥ । ସେ ତାଙ୍କ ଚରଣକୁ ପାଟକାଛ ଉପରେ ଖୋସିକରି ବସିଥିଲେ । ବାମକରରେ ଥିଲା ଆରତୀ ଓ ଡାହାଣ କରରେ ଅଙ୍କୁଶ । ପାଖରେ ମାହୁନ୍ତ ଖଦି ଘେନି ବିଞ୍ଚୁଥିଲା । ସେହି ଶୋଭା ଯାତ୍ରାରେ ରାଜାଙ୍କ ସହ ବହୁ ହାତୀ ଚାଲିଥିଲେ । ବଳରାମ ସେମାନଙ୍କର ବର୍ଣ୍ଣନା ଦେଇ ଲେଖିଛନ୍ତି:

ଯେହାଙ୍କର ପଛେ ଆସନ୍ତି ନୃପତି
ନିଘୋଡ଼ ହୋଇଛନ୍ତି ସହସ୍ରେକ ହାଥି
କେବଣ ହସ୍ତୀମୁଖ ସିନ୍ଦୂର ଭୂଷଣ
କେବଣ ହସ୍ତୀ ଦିଶଇ ବିଭୂତି ବିଲୋପନ
କେବଣହିଂ ଗଜର ବହଇ ମତ ଖଳବଳ

ଅବିଛନେ ଝରୁଅଛଇ କର୍ଣ୍ଣମୂଳ
କେବଣ ମତ୍ତଗଜ ଅଛଇ ଉଶ୍ୱାସି
ବାହାର ହୋଇଂ ଯାଇ ସେ ସାହାଣେ ନ ପଶି ।

ଦୃଷ୍ଟାନ୍ତ ଦେଇ କଥା କହିବା ଥିଲା ବଳରାମଙ୍କ ରଚନା ଶୈଳୀର ଏକ ବୈଶିଷ୍ଟ୍ୟ । ସେଥିପାଇଁ ସେ ବାରମ୍ବାର ବିଭିନ୍ନ ଉପମାନର ବ୍ୟବହାର କରୁଥିଲେ । ଉପମାନ ନ ଦେଇ ବେଳେବେଳେ ସେ କେବଳ ଚାତୁର୍ଯ୍ୟପୂର୍ଣ୍ଣ ଉକ୍ତିରେ ତାଙ୍କ ବର୍ଣ୍ଣନାକୁ ଚମତ୍କାର କରି ପ୍ରକାଶ କରୁଥିଲେ । ଜଗମୋହନ ରାମାୟଣରେ ଏପରି ବର୍ଣ୍ଣନାର ବହୁ ଉଦାହରଣ ଉପଲବ୍ଧ ହେଉଥିଲେ ବି ନିମ୍ନରେ ମନମାୟାର ଚାତୁର୍ଯ୍ୟୋକ୍ତିକୁ ଉଦ୍ଧାର କରାଯାଇଛି ।

ଶ୍ରୀରାମଙ୍କୁ ସଭା ମଧ୍ୟରେ ଦର୍ଶନ କରିବା କ୍ଷଣି ମନମାୟା ବୁଝି ପାରିଲା ଯେ ଏହି ହେଉଛନ୍ତି ପ୍ରକୃତରେ ସୀତାଙ୍କର ବର । ସେ ସୀତାଙ୍କ ସମ୍ମୁଖରେ ନିଜର ମନକଥା ପ୍ରକାଶ କରି କହିଲା-

ଯେ ତୋହୋରେ ବର ଗୋ ପ୍ରବେଶ ଯେଥି ଆସି
ବିଶ୍ୱାମିତ୍ର ସଙ୍ଗତେ ଅଛନ୍ତିଟି ବସି । (ଆଦି-ପୃ ୨୭୮)

ସୀତା ଭାବିଲେ ଏହା ହେଉଛି, ସଖୀର ଢମାଳି ।
ଯେହା ଶୁଣି ହସି ବୋଲଇ ମହିସ୍ଥଳୀ
କିମ୍ପାଇ ସଖି କଲୁ ଗୋ ଡମାଳି । (ଆଦି-ପୃ ୨୭୮)

ଏହାର ଉତ୍ତରରେ ମନମାୟା ନିଜ ଉକ୍ତିର ସତ୍ୟତା ପ୍ରମାଣ କରିବା ଭଙ୍ଗୀରେ କହିଚାଲିଛି-

ଅଯୋନିସମ୍ଭୂତା ଗୋ ସଂଯେ କମଳଣୀ
ତୋତେ ବରପଣେ ଗୋ ଯୋଗାଇ ଚକ୍ରପାଣି ।

ଯେ ସେ ଚକ୍ରପାଣି ସେ ସେ ଦେବହରି
ଯେ ସେ ଶ୍ରୀହରି ସେ ସେ ଜଗତ ଅଧିକାରୀ ।

ସର୍ବଜନ ମନ ମୋହି ପାରନ୍ତି ଯେ ହରି
ସେହୁ ସେ ଜଗନ୍ନାଥ ଅଟଇ ଅଧିକାରୀ ।

ଯାହାକର ଖଟଇ ସର୍ବଜନ ମନ
ତାହା ସେ ବୋଲି ସଖି ପୁରୁଷକରି ମୋକ୍ଷପାନ ।

ଯେ ସେ ପୁରୁଷଙ୍କର ମୋକ୍ଷପାନ ହୋଇ,
ତାହାକୁ ଦେଖିଲେ ସର୍ବଜନ ମୋହିଂ ହୋଇ ।

ଯାହାକୁ ସକଳ ଜନ ମୋହି ହୋନ୍ତି
ଜଗତମୋହୋନ ସେ ତାହାକୁ ବୋଲନ୍ତି ।

ଯେ ଜଗତମୋହୋନ ତାହାକୁ ଦେଖିଲେ ଯେ ବଶ୍ୟ ହୋଇ
ଯାହାକୁ ବଶ୍ୟ ହୋଇ ତାହାକୁ ଭଲ କହି ।

ଯାହାକୁ ଭଲ ପାଇ ସେହି ସେ ଭାଗ୍ୟବନ୍ତ
ଯେ ସେ ଭାଗ୍ୟବନ୍ତ ସେ ସେ ତୋର କାନ୍ତ ।

ଯେ ସେ ତୋହୋର କାନ୍ତ ସେ କଉଶିକ ପାଶେ
ସଭାଲୋକେ ଦେଖି ଚାହାନ୍ତି ହରଷେ । (ଆଦି-ପୃ ୨୭୮-୭୯)

କଥା ଯେଉଁଠି ଆରମ୍ଭ ହୋଇଥିଲା, ସେହିଠାରେ ସରିଗଲା । ମଝିରେ ରହିଲା, ଚକ୍ରପାଣି, ଶ୍ରୀହରି, ମୋକ୍ଷପାନ, ସର୍ବଜନ ମୋହି, ଜଗତମୋହୋନ, ବଶ୍ୟ ହୋଇ, ଭଲ ପାଇ, ଭାଗ୍ୟବନ୍ତ ପ୍ରଭୃତି ଶବ୍ଦର ପ୍ରୟୋଗ । ପ୍ରଥମ ପଦ ଯେଉଁ ଶବ୍ଦରେ ସରିଛି, ପରବର୍ତ୍ତୀ ପାଦ ସେହି ଶବ୍ଦ ଉପରେ ଜୋର ଦେଇ ଆରମ୍ଭ ହୋଇଛି । ରୁଦ୍ର ସୁଧାନିଧି, ରସକଲ୍ଲୋଳ ଓ ଅନ୍ୟାନ୍ୟ ବହୁ କାବ୍ୟରେ ଏ ପ୍ରକାର ପ୍ରୟୋଗ ମିଳୁଥିଲେ ହେଁ, ଏଥିରେ କେବଳ କେତେକ ଶବ୍ଦର ପୁନରାବୃତ୍ତି ଦେଖିବାକୁ ମିଳେନାହିଁ, କଥାକୁ ପ୍ରମାଣ କରିବାର ପ୍ରବୃତ୍ତି ବିଦ୍ୟମାନ ।

ବଳରାମ ଉପମାନ ପ୍ରୟୋଗରେ ଅତ୍ୟନ୍ତ ପାରଙ୍ଗମ ଥିଲେ । ଏଥିପାଇଁ ପୁରାଣ ଶୈଳୀରେ ରଚିତ ଗ୍ରନ୍ଥ ଉପଯୁକ୍ତ କ୍ଷେତ୍ର ନ ହେଲେ ବି ବଳରାମଙ୍କ କବି ମନ ଏହି ଶୃଙ୍ଖଳାକୁ ବାରମ୍ବାର ଭାଙ୍ଗି ଦେଇଥିଲା । ଶ୍ରୀରାମ ଓ ସୀତାଙ୍କର ପ୍ରଥମ ସାକ୍ଷାତକାଳୀନ ଦୃଶ୍ୟରେ ଶ୍ରୀରାମଙ୍କର ଉକ୍ତି ଅତ୍ୟନ୍ତ ଉପଭୋଗ୍ୟ ।

ଅଧରେ ଅଧର ପାନ ଦିଅରେ ପ୍ରାଣସଖି
ତୁହି ଶାଳୀଅନ୍ନ ମୁହିଁ ଉପବାସୀ ।

ଭୋଗକଲେ ତୋତେ ହୋଇବ ପ୍ରାଣ ଥିର
ମୁହିଁ ଚାତକେ ତୁ ଆକାଶର ନୀର ।

x x x

ତୁ କାଳ ଗରଳ ମୁଁ ଅଟଇ ସଦାଶିବ
ତୋହୋର ମୋହୋର ସେ ଅଟଇ ସଦଭାବ ।

ତୁହି ବେଦ ପୋଥି ମୁହିଁ ଅଟଇ ବେଦପାଣି
ଆନକି ତୋହର ଗୁଣଗ୍ରାମ ଜାଣି ।

ମୁହିଁ ସୁରପତି ତୁ ଅଟୁ ସୁଧାରସ
ଆନକି ଭାର୍ଜନ ତୋତେ କରିପାରେ ଗ୍ରାସ ।

ମୁହିଁ ଅଗସ୍ତି ତୁ ସପତ ସାଗର
ତୁହି କୁମୁଦ ମୁଁ ଯେ ଅଟଇ ନିଶାକର ।

ତୋତେ ଦେଖିଲେ ମୋହୋର ଆନନ୍ଦ ହୋଯେ ପ୍ରାଣ
ତୁ ସଖୀ ପଦ୍ମ ମୁଁ ଛାୟାର ରମଣ ।

ମୁହିଁ କାମଦେବ ତୁ ହି ସେ ଅଟୁ ରତି
ତୋହୋର ସ୍ୱରୂପକୁ ମୁଁ ଅନୁରୂପେ ପତି ।

ହସି କଥା କହି ରଖୁ କିନା ପ୍ରାଣ
ତୁ ସେ ଲକ୍ଷ୍ମୀ ମୁଁ ଯେ ଅଟଇ ନାରାୟେଣ । (ଆଦି-ପୃ ୩୯୨)

ବଳରାମ କେବଳ ପୁରାଣକାର ନଥିଲେ, ସେ ଥିଲେ ଓଡ଼ିଶାର ପ୍ରଥମ ପଦାବଳୀ ଲେଖକ । ଦୁର୍ଗା, ଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କ ଲୀଳାକୁ ନେଇ ସେ ବହୁ କ୍ଷୁଦ୍ର କବିତା ରଚନା କରିଥିଲେ । ସେସବୁ କବିତାରୁ ତାଙ୍କ କଳ୍ପନାମୁଖର ମନର ପ୍ରକୃଷ୍ଟ ପରିଚୟ ମିଳିଥାଏ । ଜଗନ୍ନାଥଙ୍କ ପହଣ୍ଡିକାଳର ଦୃଶ୍ୟ କବିଙ୍କୁ ରାଜକର୍ମଚାରୀମାନଙ୍କ ଦ୍ୱାରା ବନ୍ଧାହୋଇ ଯାଉଥିବା ଚୋର ସଦୃଶ ଜଣା ଯାଇଛି । କବିଙ୍କ ମନରେ ପଡ଼ିଛି ଭଗବାନଙ୍କର ବହୁ ଅତୀତ କର୍ମ ।

ସଖି । ଚାହାଁ ଗୋ ।
ହସ ହସ ହଉଛନ୍ତି ନାହା ଗୋ ।
ବେଦ ଲଗନେ କହିଛି ଯାହା ଗୋ ।
ନିଘୋଡ଼ କରି ଭୁଜ ଧରି ନେଉଛନ୍ତି କେହି ନାହାନ୍ତିକି ସାହା ଗୋ ।

ସଖି ଗୋ । ଜାଣିଲା ମୋ ପ୍ରଭୁ ଜଗତ ଖାତେକ
ତାଙ୍କୁ ଲୋକେ ନେଉଛନ୍ତି ଧରି,
ପାହିବାକୁ ରାତ୍ର ପହଡ଼େକ ଥାଉ ସେ ହରିଲେ କାହାର ନାରୀ ଗୋ ।

ସଖି ଗୋ । ବିଭାହୋଇଲାର ପ୍ରାୟେକ ଦିଶନ୍ତି ଅଣ୍ଟାରେ ପାଟର ଡୋର
ଚକ୍ର ଆକାରେ ସେବକ ବେଢ଼ିଛନ୍ତି ଆବୋରି ତାକି ଛାମୁର ।
ସଖି ଗୋ । ପୂର୍ବେ ରାଜଜେମା ଚୋରାଇ ଆଣିଲେ
ତା କି ଚର ଭେଟାଇଲେ ଆଣି ।
ବଳରାମ ଦାସ ତା' ଦେଖି ଉଷତ ଧରି ନେଲେଟି ତିନି ପରାଣୀ ଗୋ ।

ଦେବୀ ଦୁର୍ଗାଙ୍କ ବନ୍ଦନା କଲାବେଳେ, ସେ ସବୁଠାରେ କେବଳ ରଙ୍ଗକୁ ହିଁ ଦେଖିଛନ୍ତି ।

ମାଗୋ ରଙ୍ଗ ଶଙ୍ଖ ରଙ୍ଗ ବସ୍ତ୍ର
ରଙ୍ଗ ତୋ ଅଧର ନେତ୍ର
ନଖ ମୁଖ ରଙ୍ଗ ତୋର
ଲଲାଟେ ରାଗ ସିନ୍ଦୂର ।
କରେ ରଙ୍ଗ ଚୂଡ଼ି ଗୋ ମୋ ଅଳତା ରଙ୍ଗ ତୋ ପାୟେ
ମାଗୋ ରଙ୍ଗ ପାଟ ବରତ ତୋ ବାହେ
ମାଗୋ ରଙ୍ଗ ତୋ ପଦ୍ମଆସନ
ରଙ୍ଗ ତୋ ପୀତ ବସନ
ରଙ୍ଗ ତୋ କାନ୍ଧେ ପଇତା
ରଙ୍ଗ ତୋ ଲଲାଟପଟ ଚିତା ।
ମାଗୋ ରଙ୍ଗ ଅଗ୍ନିରୁ ତୁ ଜାତ ହୋୟେ
ରଙ୍ଗେ ତୁଷ୍ଟିକଲେ ଦେବତାୟେ

ରଙ୍ଗେ ଶିବର ହୋଇଲୁ ଘରଣୀ
ରଙ୍ଗେ ମୈଷାସୁର ମର୍ଦ୍ଦିନି ।
କାଳ ତକରାଳି କାଳି କରାଳି ରଣ ବେତାଳି
ରୁଧିର ପିବନ୍ତେ ତୋଷ, ଭଣେ ବଳରାମ ଦାସ ।

କବିଙ୍କର ଆଉ ଗୋଟିଏ କବିତା ବିରହିଣୀ ରାଧାଙ୍କର ବସନ୍ତକାଳୀନ ଭାବନା ନେଇ ରଚିତ ।

ବସନ୍ତ ବହିଲା କୋକିଳ ରାବିଲା ମଦନ ଆସୁଛି ବହି
ଚାଲ ପ୍ରିୟ ସଖି ଯେକ ରୁଣ୍ଡ ହୋଇ ବୃନ୍ଦାବନେ ଥିବା ରହି ଗୋ ।
ମଦନ ଆସି ସେ କିସ କରିପାରେ ମଦନକୁ କିମ୍ପା ଡର
ଏକାଉ କୃଷ୍ଣମୋ କୋଟିଯେ ମଦନ ପିଛିଲେ ଶ୍ରୀ ଗିରିଧର ଗୋ ।
ମଦନ ଆରତେ ନନ୍ଦ ସୁତ କାହ୍ନୁ ଜୀବଧନ ପ୍ରାଣମଣି
ତୃଷାରେ ତୃଷିତ ଚାତେକ ପରାୟେ ବଳରାମ ଦାସ ଭଣି ଗୋ ।

ଶ୍ରୀରାଧା ସଖୀମେଳରେ ଯମୁନାରେ ସ୍ନାନ କରିବା ପାଇଁ ଉଦ୍ୟତ ହେଉଥିବା ବେଳେ କୌଣସି ଜଣେ ସଖୀ ରାଧାଙ୍କୁ ବାରଣ କରି କହିଛି, "ରାଧେ ତୁ ଯମୁନା ଯା ଗାଧୋଇ ।" କବିତାର ଭାଷା ଓ ଭାବନାରେ ଜଣେ ପ୍ରତିଭାବାନ କବିର କରସ୍ପର୍ଶ ଦେଖିବାକୁ ମିଳିଥାଏ ।

ରାଧେ ଗୋ ହସ୍ତରେ ଦୟେଣା ମୁଣ୍ଡରେ ଅୟେଣା କାନ୍ଧରେ ପତନୀ ଶାଢ଼ୀ
ସର୍ବ ସଖୀ ଘେନି ଚଳେ ଚନ୍ଦ୍ରାବଳୀ ଯେସନେ ସିନ୍ଧୁ ଦୁଲାଳୀ ଗୋ ।।ଘୋଷା ।।
ରାଧେ ତୁ ଯମୁନା ନ ଯା ଗାଧୋଇ ।
ଯମୁନାର ପାଣି ବାସଂଧ ହୋଇଛି ଘାଟ ଘେନୁଛି ମାଧୋଇ ଯେ !
ନାକେ ନାକଚଣୀ ଗୋଡ଼ରେ ପାହୁଡ଼ ହସ୍ତରେ ସୁବର୍ଣ୍ଣ ବାହି ।
ଡାଳିମ୍ବ ନେତକୁ ଉଠାଣି ବୟେସ ନେଉଟି ନ ଚାହୁଂ ରାହି ଗୋ ।।
ଆଜର ସ୍ନାହାନ କୂପ ଜଳେ ସାର ଯମୁନା ନ କରି ଆଶ ।
ଘଟ ଦାନ ଦେଲେ ସୁଖେ ଗାଧୋଇବ ଭଣେ ବଳରାମ ଦାସ ଗୋ ।।

ଯମୁନାକୁ ଗାଧୋଇ ନଯିବା ପାଇଁ ରାଧାଙ୍କୁ ବାରଣ କରିବାର ଦୃଶ୍ୟ ବହୁ କବିଙ୍କ

ରଚନାରୁ ମିଳିଲେ ବି 'ଡାଳିମ୍ବ ନେତକୁ ଉଠାଣି ବୟେସ ନେଉଟି ନ ଚାହୁଂ ରାହି ଗୋ' ପଦକୁ ରାଧାଙ୍କ ସୌନ୍ଦର୍ଯ୍ୟରେ ଯେଉଁ ମାଦକତା ସୃଷ୍ଟି ହୋଇଛି, ତାହା ଅନ୍ୟତ୍ର ଦୁର୍ଲ୍ଲଭ ।

ବିରହୀ କୃଷ୍ଣ ମଦନ ଜ୍ୱାଳାରେ କାତର ହୋଇ ସଖୀକୁ ସଙ୍କେତ ଦେଇ ରାଧାଙ୍କ ପାଖକୁ ପଠାଇଛନ୍ତି । ରାଧା ମଧ୍ୟ ବିରହିଣୀ । ସଖୀଠାରୁ କୃଷ୍ଣଙ୍କ ବ୍ୟଥା କଥା ଶୁଣି ସେ ସଖୀ ସହ ବୃନ୍ଦାବନକୁ ଯାଇଛି ରାତିଅଧରେ । ସେଠାରେ ମିଳନ ହୋଇଛି ନୟନ ସହ ନୟନର । ପରେ ସେମାନେ ରାସକ୍ରୀଡ଼ା ରଚନା କରି ହରଷ ହୋଇଛନ୍ତି ।

ଭାବନା ଦୃଷ୍ଟିରୁ ଏଥିରେ ନୂତନତା ନାହିଁ ସତ, କିନ୍ତୁ ଭାଷା ପ୍ରୟୋଗରେ ବଳରାମଙ୍କ ଦକ୍ଷତା ଏହାର ପ୍ରତ୍ୟେକ ପ୍ରୟୋଗରେ ପ୍ରକାଶିତ ।

ଦୂତୀ ବଚନ ଶୁଣିଣ ଆନନ୍ଦ । ବିମ୍ବା ଅଧରେ ହସେ ମନ୍ଦ ମନ୍ଦ
ତାହାର ବିହୁନେ ମୋ ତନୁ କ୍ଷୀନ । ବିଳମ୍ବ ନ କରି ଚଳ ବହନ ।। ଘୋଷା ।।
ଆଣ ପ୍ରାଣସଖୀ । ମଦନ ବାଣ ମୋତେ କଲା ଦୁଃଖି ।
ସହଚରୀ ହାଥେ ସଙ୍କେତ ମାଳି । ଚଳିଲା ଦୂତିକା ଭେଟିଲା ବାଳୀ ।
ବସିଛି ରାଧିକା ଅବନୀ ଚାହିଁ । ଲିହ ଘେନିଣ ମେଦିନୀ ଚିରଇ ।
ଶୁଣ ସଖି ଯାହା ଅଇଲି ଦେଖି । ତୋର ବିହୁନେ କୃଷ୍ଣ ବଡ଼ ଦୁଃଖି ।
ଅନଙ୍ଗ ବାଣ କରିଅଛି ଜ୍ୱାଳା । ସଙ୍କେତ ଦେଇଛି ଏ ପୁଷ୍ପମାଳା ।
ସେ ଦୂତୀ ବଚନ, ସଜ ହୁଅ ସଖି ଯିବା ବହନ ।
ଶୁଣି ରାଧିକା ହରଷ ହୋଇଣ । ସାଜିଲେ ଅଙ୍ଗେ ନାନା ଆଭରଣ ।
ବେଳ ଜାଣିଣ ହୋଇଲେ ବାହାର । ବେଭାରେ ରଜନୀ ଅର୍ଦ୍ଧ ଅନ୍ଧାର ।
ସେ କଲେ ଗମନ । ଯାଇଁ ଭେଟିଲେ ନନ୍ଦେଲି ନନ୍ଦନ ।
ନୟନେ ନୟନେ ମିଳିଲା ଯହୁଁ । ରାହାସ ଉତ୍ସବ ରଚିଲେ ତହୁଁ ।
ଭୁଜେ ଭିଡ଼ା ଭିଡ଼ି ମୁଖେ ଚୁମ୍ବନ । ରତି ସାରିଣ ପିନ୍ଧିଲେ ବସନ ।
ସେ ହରଷ ଦୁଇ । ବଳରାମ ଦାସ ପାଦେ ସେବଇ ।

ଏହିପରି ଆଉ ଗୋଟିଏ କବିତା ଗୋପୀମାନଙ୍କ ପାଇଁ । ସେମାନେ ଯମୁନା ଯିବେ ଦୁର୍ଗାଙ୍କ ପାଖରେ ବର ମାଗିବେ ନନ୍ଦ ପୁଅଙ୍କୁ ବର ରୂପେ ପାଇବା ପାଇଁ । ନବ ବ୍ରତର ଦିନ । ବିଳମ୍ବ ହେଉଛି । ବରଜ କାମିନୀମାନେ ତକାତକି ହୋଇ ଯିବାପାଇଁ ପ୍ରସ୍ତୁତ ହେଉଛନ୍ତି । ଏହି ଭାବନାକୁ ନେଇ କବି ଲେଖିଲେ-

ମାଗୋ, ଶରଦ ଋତୁ ହୋଇଲା ପ୍ରବେଶ
ବରଜ କାମେନୀ ମନେ ଉଲ୍ଲାସ ।

ଯେକକୁ ଆରେକ କୁହାକୋହି ହୋଇ
ଚାଲ ଗୋ ଯମୁନା ଯିବା ଗାଧୋଇ ।

ତରୁଣୀ କାଳେ ନବବ୍ରତ ଗୋ ମାଆ
ବିଳମ୍ବ କିଆଇଁ କର ।
ଚାଲ ଦେବୀଙ୍କି ଜଣାଇ ମାଗିବା ବର ।

ମାଗୋ, ଗନ୍ଧ ଚନ୍ଦନ କର୍ପୂର ଚୁଆଦି
କାନ୍ଧେ ବସନ ବିବିଧ ସୁଗନ୍ଧି,
ଦେବୀଙ୍କ ପୂଜା ବିଧି ଘେନି ଚଳି,
ପୁଣି ଯମୁନା ତଟେ ପ୍ରବେଶ ଗୁଆଳି,

ସ୍ନାହାନ ସାରି ବିବିଧ ପ୍ରସିଦ୍ଧି
ତାଙ୍କୁ ମିଳି ପୂଜିଲେ ସକଳ କାମେନୀ
ଆମ୍ଭର ବାଞ୍ଛା ପୂରାଅ ଯିଗ୍ନସେନୀ ।

କାତ୍ୟାନୀ କରୁଣା କର ଗୋ ମାଆ
ମାଗୋ ନନ୍ଦନନ୍ଦନ ହୋନ୍ତୁ ଆମ୍ଭ ବର ।
ମାଗୋ, କାମଦେବ ମନେ ଗର୍ବ ବହିଲା
ଗୋପନ ବରକୁ ପୟାଣ କଲା ।
ଆମ୍ଭେ ଅବଳା ଯହୁଁ ତୁଷ୍ଟି କଲୁ
ପୁଣି ନନ୍ଦନନ୍ଦନକୁ ବର ପାଇଲୁ ।
ଆମ୍ଭ ପ୍ରାଣପତି ଗୋବିନ୍ଦେ ହୁଅନ୍ତୁ
ପୂରାଅ ବାଞ୍ଛା ଆମ୍ଭର
ମାଗେ ଦାସ ବଳିଆ ତୋ ପାଦେ କିଙ୍କର ।

ଭୀଷଣ ବର୍ଷାରେ କବିଙ୍କ ଘରଖଣ୍ଡି ଭାଙ୍ଗିଗଲା । ସେଦିନ ଗୁରୁ ପଞ୍ଚମୀ । କବି ବ୍ରତ ପାଳନ ପାଇଁ ସତ୍ୟକରି ଇନ୍ଦ୍ରଙ୍କ କୋପରୁ ନିରାଶ ହେଲେ । ଏଥିପାଇଁ ଇନ୍ଦ୍ରଙ୍କ ଉପରେ ଅଭିମାନ କରି କବି ଲେଖିଲେ ଗୋଟିଏ କ୍ଷୁଦ୍ର କବିତା ।

